# ସେ ଫୁଲ ଫୁଟିଥିଲା

ସ୍ୱର୍ଗତ ଗୋଦାବରୀଶ ମହାପାତ୍ର



ଓଡ଼ିଶା ବୁକ୍ ଷ୍ଟୋର :

ପ୍ରକାଶକ
ଶ୍ରୀ ଅନନ୍ତ ମିଶ୍ର
କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର
ବାଲୁବଜାର, କଟକ-୨

ପ୍ରଥମ ସଂସ୍କରଣ
ଶ୍ରୀପଞ୍ଚମୀ—୧୯୬୮

ଦ୍ୱିତୀୟ ସଂସ୍କରଣ
ମହାଳୟା—୧୯୭୮

ମୁଦ୍ରାକର
ପ୍ରସାଦ ପ୍ରେସ୍
କଟକ-୨

ମୂଲ୍ୟ—
ବନ୍ଧାଇ : ଦଶଟଙ୍କା
ଅବନ୍ଧା : ଆଠ ଟଙ୍କା

**JE FULA FUTITHILA**

(Poetry)

Late Godavarish Mahapatra

First Edition-1968
Second Edition-1978

Publisher
Sri Anant Misra
Cuttack Student's Store
Cuttack-2

Printer
Prasad Press, Cuttack-2

Price :
Deluxe Rs. 10-00
Popular Rs. 8-00

*A portion of this book is printed on paper was made available by Government of orissa at concesional rate.*



ଯେ ଫୁଲ ଫୁଟିଥିଲା ଏ ମଧୁ ଉପବନେ
ଜୀବନ ଉଷାଗମେ ସୁରଭି ବିତରଣେ,
ଗୋଟାଇ ଗୋଟି ଗୋଟି ସେ ଫୁଲ ପାଖୁଡ଼ାରେ
ଏ ମାଳା ଗୁନ୍ଥେ ଆଜି ବସି ମୁଁ ସରାଗରେ ।

ଗୋଦାବରୀଶ ମହାପାତ୍ର

କବିତା କନ୍ଦ୍ରେ -
କଟକ ବଡ଼ଡାକ୍ତରଖାନା
୧୬.୧୧.୧୯୬୪

# ଦୁଇ ପଦ

'ସେ ଫୁଲ ଫୁଟି ଥିଲା'—'ସେ ଫୁଲ ଫୁଟୁ ଥିଲା'। 'ଫୁଲ ଫୁଟି ଥିଲା ମାତ୍ର' କହିଲେ ଯଥେଷ୍ଟ ଓ ଯଥାର୍ଥ ହେବ ନାହିଁ, 'ଫୁଲ ଫୁଟି ଆସୁଥିଲା' ଓ ଏପରି ଭାବରେ ଫୁଟିଲା ଯେ, ଖାଲି ପଲ୍ଲବିତ ବଲ୍ଲରୀ ନୁହେଁ, ସମଗ୍ର ଉଦ୍ୟାନକୁ ଏକାବେଳକେ ମଣ୍ଡି ଦେଇଗଲା—ଏହାହିଁ ବାସ୍ତବ କଥାର ଯଥାର୍ଥ ରୂପାୟନ।

ସରସ କବି ଗୋଦାବରୀଶ—ସ୍ୱଭାବ କବି। କବିତା ତାଙ୍କର ସହଜାତ। କବିତ୍ୱର ସ୍ଫୁର୍ତ୍ତି ତାଙ୍କଠାରେ ଥିଲା ଏକ ନିତ୍ୟନୈମିତ୍ତିକ ପ୍ରବୃତ୍ତି। ସେଥିପାଇଁ ବାହ୍ୟ ପ୍ରରୋଚନା କିମ୍ବା ବିଧିବଦ୍ଧ ପରିକଳ୍ପନାର ଆବଶ୍ୟକତା ନଥିଲା। କବିଙ୍କର ଅଦ୍ୟାପି ଜୀବିତ ବାଲ୍ୟଗୁରୁବର୍ଗଙ୍କଠାରୁ ଜଣାଯାଏ, କିଶୋର ବୟସରେ ଏହି ପ୍ରବୃତ୍ତିର ବିସ୍ମୟକର ଅଭିବ୍ୟକ୍ତି ଘଟିଥିଲା; ଗ୍ରାମର ସାଙ୍ଗସାଥି ମେଳରେ ମଧ୍ୟ ତାଙ୍କର ଏହି ଶକ୍ତି ସରସତାର ବାତାବରଣ ସୃଷ୍ଟି କରୁଥିଲା। ଜୀବନର ଆଦ୍ୟ ଭାଗରେ ସ୍ୱଭାବର ଏପରି ସ୍ଫୁର୍ତ୍ତି, ତାହା ପରବର୍ତ୍ତୀ କାଳରେ କବିଙ୍କୁ ନମ୍ର-କଠୋର-ସାଧନା ପଥରେ ଅଗ୍ରଗତି କରିବାକୁ ବଳିଷ୍ଠ ପ୍ରେରଣା ଦେଇଥିଲା।

୧୯୬୫ ନଭେମ୍ବର ପଚିଶିରେ କବିଙ୍କର ମହାପ୍ରୟାଣ ଘଟିଥିଲା। ତାହାର ଅଳ୍ପ କେତେ ଦିନ ଆଗରୁ ଏହି କବିତା-ଗୁଚ୍ଛ ପ୍ରକାଶ ପାଇଁ ଉଦ୍ୟମ ଆରମ୍ଭ ହୋଇଥିଲା। ବନ୍ଧୁମାନଙ୍କର ପରାମର୍ଶ କବିଙ୍କୁ ଅନୁପ୍ରାଣିତ କରିଥିଲା। ଶ୍ରୀଯୁକ୍ତ ଅନନ୍ତ ମିଶ୍ର ଏହାର ପ୍ରକାଶନ ଭାର ଗ୍ରହଣ କରିବାକୁ ସ୍ୱୀକୃତ ହେବାରେ କବି ଆନନ୍ଦିତ ହୋଇଥିଲେ। ଏଥିରେ ସ୍ଥାନ ପାଇଥିବା କବିତାଗୁଡ଼ିକର କାଳ ନିର୍ଦ୍ଦେଶ କରିବାକୁ କବି ଇଚ୍ଛା ପ୍ରକାଶ କରିଥିଲେ। କବିତା ସଙ୍କଳନ ଶେଷ ହେଲାବେଳକୁ କବି ଏକ ପ୍ରକାର ଶକ୍ତିହୀନ ହୋଇ ପଡ଼ିଲେଣି। ପରେ ଚେଷ୍ଟା କରାଯାଇ ମଧ୍ୟ ପ୍ରତ୍ୟେକ କବିତାର କାଳ ନିର୍ଦ୍ଦେଶ କରାଯାଇପାରିଲା ନାହିଁ। ହୁଏ ତ ଦ୍ୱିତୀୟ ସଂସ୍କରଣ ଲାଗି ଏହା ବାକି ରହିଗଲା।

ଗୋଦାବରୀଶଙ୍କ ପ୍ରତିଭା ବହୁମୁଖୀ । ସେ କେବଳ 'ମଧୁ କ୍ଷୀର-ଦ୍ରାକ୍ଷା-ମଧୁ ମଧୁରିମା'ର କବି ନ ଥିଲେ । ଏକାଧାରରେ ନବନୀତ କୋମଳ ଲଳିତ କବିତ୍ୱ ଠାରୁ କୁଳିଶକଠୋର ପ୍ରୌଢ଼ ରଚନା ପର୍ଯ୍ୟନ୍ତ ତାଙ୍କ ଲେଖନୀରେ ଫୁଟି ଉଠୁଥିଲା । କବିତା ଲେଖିଲାବେଳେ ସେ ଶବ୍ଦ ପ୍ରବାହରେ ସାମାନ୍ୟ ପ୍ରତିବନ୍ଧକ ସୁଦ୍ଧା ଉପଲବ୍ଧି କରୁ ନ ଥିଲେ ! ବର୍ଷା କାଳରେ ବିସ୍ତୃତ ବନ ଜଙ୍ଗଲରେ ଘନ ଘୋର ବୃଷ୍ଟି ହୁଏ । ପରେ ପରେ ଜଳଧାରା ସ୍ୱଚ୍ଛନ୍ଦରେ ପ୍ରବାହିତ ହୁଏ । କବି ଗୋଦାବରୀଶଙ୍କର କବିତା ସେହିପରି । ଲେଖିବାକୁ ଇଚ୍ଛା କରିବା ସଙ୍ଗେ ସଙ୍ଗେ ପଦପଂକ୍ତି ପ୍ରଖର ପ୍ରବାହରେ ପ୍ରସୃତ ହୋଇ ଆସୁଥିଲା । ସେଥିପାଇଁ ବିର୍ଦ୍ଦିଷ୍ଟ ଚିନ୍ତା ଆବଶ୍ୟକ ହେଉ ନଥିଲା । ଏପରି କି ତାଙ୍କର ପିଲାଦିନର ଲେଖା ଦେଖିଲେ ଜଣାଯାଏ, ତହିଁରେ ବେଶି କିଛି କଟା କଟି ନଥିଲା । ଏହି ଅଭ୍ୟାସ ସାରାଜୀବନ ଅଖଣ୍ଡିତ ଥିଲା । ତାଙ୍କର ପ୍ରିୟ 'ନଅାଁ ଖୁଣ୍ଟା'ରକବିତା ପ୍ରତି ଏହା ସର୍ବାଧିକ ଭାବରେ ପ୍ରଯୋଜ୍ୟ । ଏପରିକି, ଚଳନ୍ତା ମଟର ଗାଡ଼ିରେ ମଧ୍ୟ 'ନଅାଁ ଖୁଣ୍ଟା'ର ପରବର୍ତ୍ତୀ ସଂଖ୍ୟା ପାଇଁ ସେ କବିତା ଲେଖି ପକାଉଥିଲେ । ତାଙ୍କର କେହି କେହି ବନ୍ଧୁ ଥଟ୍ଟାରେ କହୁଥିଲେ— "ସୁବିଧା ଥିଲେ ସାଇକଲରେ ଯିବାବେଳେ ମଧ୍ୟ ଆପଣ କବିତା ଲେଖି ପକାନ୍ତେ !" 'ଯେ ଫୁଲ ଫୁଟିଥିଲା'ର କବିତାବଳୀ ଏହି ଅସାଧାରଣ ସିଦ୍ଧି ଲାଭର ଭିତ୍ତିଭୂମି ।

ଗୋଦାବରୀଶଙ୍କର କବିତା ଅର୍ଦ୍ଧଶତାବ୍ଦୀବ୍ୟାପୀ ଓଡ଼ିଶାର ପ୍ରତିବିମ୍ବ ବହନ କରିଅଛି । ଏହି ମତ ବିଶେଷ ଭାବରେ ୧୯୩୦ରୁ ୧୯୭୫ ମଧ୍ୟରେ ଲିଖିତ କବିତାରେ ସାର୍ଥକତା ଲାଭ କରିଅଛି । ତଥାପି, ବାଲ୍ୟ ବୟସର କବିତାଗୁଡ଼ିକରେ ପରିଣତ ବୟସର ଦିବ୍ୟ-ଦୃଷ୍ଟି ସଙ୍କେତିତ ହୋଇଥିଲା । ତାଙ୍କର ସ୍ୱଦେଶ ପ୍ରୀତି ସେତେବେଳେ ମଧ୍ୟ ତାଙ୍କ ଅନ୍ତରକୁ ଅନୁକମ୍ପିତ କରୁଥିଲା । ଗୋପବନ୍ଧୁ, ଗୋଦାବରୀଶ, ନୀଳକଣ୍ଠ ଓ କୃପାସିନ୍ଧୁ ଏ ଦେଶରେ ଏ ସ୍ୱଭାବକବିଙ୍କର ଉଦ୍‌ବୋଧକ ଥିଲେ । ସେଥିପାଇଁ ୧୯୨୦ ଖ୍ରୀଷ୍ଟାବ୍ଦରେ 'ଆତ୍ମବଳ' କବିତାରେ ସେ ଲେଖିଥିଲେ—

"ଦେଶ ଯାକ ଆଜ ଉଠୁଥୁ ଥର ଥର
ବଦେଶୁ ବଇଣ୍ଠ ଆସିଛୁ ମାଡ଼
ସଇନେ ଦଳ ଏ ସକଳ ସମ୍ପତ୍ତି
ସାଗ ଦେଶ ବନେ ଜଣିବ ବୋଲି ।
ଗୁପତେ ପଶି ସେ ବେପାର ବଣିଜେ
ଘାଇ ଘାଇ ମେଳ ଫନ୍ଦାଇ ରଙ୍ଗେ
ତୋଳିଛୁ ଗୁପତେ କୋଟି ତରବାରି
ସହସ୍ର ସଇନ ଆଦର ସଙ୍ଗେ ।"

(ଯେ ଫୁଲ ଫୁଟିଥିଲା—ପୃ ୧୫)

ଏହି ସ୍ୱଦେଶ ପ୍ରୀତି ସେତେବେଳର ଜାତୀୟ ଜୀବନରେ ଏକାନ୍ତ କାମ୍ୟ ଥିଲା । ଦୁର୍ଦ୍ଦାନ୍ତ ବଦେଶୀ ଶାସନରୁ ଜନ୍ମଭୂମିକୁ ମୁକ୍ତ କରିବାର ଘପ୍ତ ଚେତନା ଜନନାୟକମାନଙ୍କର ସର୍ବାଧିକ ଧ୍ୟେୟ ଥିଲା । ପରବର୍ତ୍ତୀ କାଳରେ କବ ଅନୁଭବ କଲେ ଯେ, ଭାରତୀୟ ମହାଜାତୀୟ ଚେତନାର ପ୍ରସାର ଘଟୁଛି ସତ; କନ୍ତୁ, ଓଡ଼ିଆ ଭାଷାଭାଷୀଙ୍କର ଅସ୍ତିତ୍ୱବୋଧ ଓ ସ୍ୱାର୍ଥ-ସଂରକ୍ଷଣ ଦଗରେ ସେଭଳି ଗଭୀର ଚନ୍ତା କରାଯାଉନାହିଁ । 'ନଆଁ ଖୁଣ୍ଟା' ସେହି ପୁଣ୍ୟ ପ୍ରେରଣାର ପୃଷ୍ଣଳ ପ୍ରକାଶ ରୂପେ ପ୍ରସିଦ୍ଧି ଲଭ କଲା ।

ଗୋଦାବରୀଶ କେବଳ କବତାର ସେବକ ନ ଥିଲେ, 'କବ'ଙ୍କର ମଧ୍ୟ ଉପାସକ ଥିଲେ । କବଙ୍କ ପାଇଁ ସେ ଯାହା ଲେଖିଥିଲେ, ତାହା ଏବେ ତାଙ୍କପ୍ରତି ଲକ୍ଷିତ ହୋଇଥିଲା ପରି ପ୍ରତୀତ ହୁଏ । ସେ ଲେଖିଥିଲେ—

"ଅନନ୍ତ ପ୍ରତଭାଶାଳୀ, ହେ ମର୍ତ୍ତ୍ୟପ୍ରବାସୀ
ବାଣୀସୁତ, ଶାନ୍ତିପ୍ରିୟ ଅମୃତପ୍ରୟାସୀ;
ଦୈବତ ବାଞ୍ଛିତ ତବ ମାନସ ବକାଶ
ତୃପ୍ତ କରେ ନମିଷକେ ଜଗତ ମାନସ ।
କେ କହିବ ନର ତୁମ୍ଭେ; ମାନବ ରୂପରେ
ଲୀଳା କର ହେ ଅମର, ମର ଜଗତରେ

ଅକଳ୍ପ୍ୟ ବିଦ୍ବୁକ୍ଷା ତବ ଅଚିନ୍ତ୍ୟ ଧାରଣା
ଧନ୍ୟ ତବ ଜୀବନର ବିମଳ ସାଧନା ।”

( ଯେ ଫୁଲ ଫୁଟିଥିଲା—ପୃ-୪୭ )

ମର୍ତ୍ତ୍ୟପ୍ରବାସୀ ଆଜ ତାଙ୍କର ନିତ୍ୟାଧାମକୁ ଚାଲିଯାଇଛନ୍ତି, ତଥାପି ତାଙ୍କର ସରସ କବିତା ଆଜ ସୁଦ୍ଧା “ତୃପ୍ତି କରେ ନିମିଷକେ ଜଗତ ମାନସ ।” ତାଙ୍କର ବିଚିତ୍ର ପ୍ରତିଭା ଦେଖି ଆଜ ସୁଦ୍ଧା ବିମୁଗ୍ଧ ପାଠକ ସ୍ୱତଃ ତାଙ୍କର ଭାଷାରେ କହିଥାଏ—

“ଅକଳ୍ପ୍ୟ ବିଦ୍ବୁକ୍ଷା ତବ ଅଚିନ୍ତ୍ୟ ଧାରଣା
ଧନ୍ୟ ତବ ଜୀବନର ବିମଳ ସାଧନା ।”

ଏ ପ୍ରସଙ୍ଗରେ ଆଜ ଗୋଟିଏ କଥା ସୂଚାଇଦେବା ଆବଶ୍ୟକ ମନେହୁଏ । ୧୯୧୭ ଖ୍ରୀଷ୍ଟାବ୍ଦରେ କବି ‘ଉତ୍ତ ରାପୁଣୀ’ କବିତା ଲେଖିଥିଲେ । ଏହି ପୀଠ ବାଣପୁରର ଘଣ୍ଟଶିଳା ପାହାଡ଼ର ପାଦଦେଶରେ ଅବସ୍ଥିତ । ୧୯୧୭ ବେଳକୁ ସେ ଅଞ୍ଚଳ ଏକ ଦୁର୍ଗମ ଜଙ୍ଗଲ ଥିଲା । ତାହାର ନିକଟରେ ପରେ ପଣ୍ଡିତ ଗୋଦାବରୀଶ ମିଶ୍ର ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟ ସ୍ଥାପନ କଲେ । ବର୍ତ୍ତମାନ ସେଠାରେ ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇଗଲାଣି । ୧୯୧୭ ଖ୍ରୀଷ୍ଟାବ୍ଦବେଳକୁ ସେଠାରେ ଏଭଳି ଅନୁଷ୍ଠାନ ପ୍ରତିଷ୍ଠିତ ହେବାର କଳ୍ପନା ମଧ୍ୟ କରିହେବା ସମ୍ଭବପର ନ ଥିଲା, କିନ୍ତୁ କବି କାହିଁକି ଓ କିପରି ଏଇ ଭବିଷ୍ୟତ ବାଣୀ କରିଥିଲେ, ତାହା କହି ହେଉନାହିଁ । କବି ଲେଖିଥିଲେ :—

“ଆଗୋ ଘଣ୍ଟଶିଳା ବି ବିରାଜେ ତୋହି ପାଶେ
ଏ ଉଗ୍ରହୃଦୟ ମା ଗୋ ! ନବ କର୍ମ ଭୂମେ
ଚିନ୍ତିତ ସ୍ତମ୍ଭିତ ପୁଣି ବ୍ୟାକୁଳ ହତାଶେ
ଅତୀତ ସ୍ୱର୍ଗୀୟ କୂଳେ ସାହସ ସଂଯମେ
ଏ ସ୍ୱର୍ଣ୍ଣ ସୈକତ ଭାଲେ ଦେଖରେ ନୟନ
ଅତୀତ ଅମୃତ-ସ୍ମୃତି, ଭବିଷ୍ୟ ଭବନ ।”

( ଯେ ଫୁଲ ଫୁଟିଥିଲା—ପୃଷ୍ଠା-୨୭ )

ଆଜ କବିଙ୍କର ସ୍ୱପ୍ନ ସତ୍ୟ ହୋଇପାରିଛି । ଶାଳଆ ନଈ କୂଳରେ, 'ଉତ୍ତରାପୂର୍ଣୀ' ନିକଟରେ ଶିକ୍ଷାର ଭବନ ଗଢ଼ି ଉଠିଛି । ଏହି କବିତାର ତୃତୀୟ ସ୍ତବକରେ କବି ଗାଇଥିଲେ—

"ବାସନା-ଅଚଳ ଚୂଳ ସ୍ୱର୍ଣ୍ଣ ସିଂହାସନେ
ଦେଖେ କେତେ ଭବିଷ୍ୟତ ତୋ ପୀଠ ପୂଳନେ ।"

କବିଙ୍କର ବାସନା ବାସ୍ତବରେ ପୂର୍ଣ୍ଣହୋଇଛି । କାରଣ ସେଠାରେ ଆଜ ଯେଉଁ ଶିକ୍ଷାର ପୀଠ ଗଢ଼ି ଉଠିଛି, ତାହା ମଧ୍ୟ କବିଙ୍କର ବନ୍ଧୁ ହିନର ପ୍ରିୟ କର୍ମସ୍ଥଳୀ ଥିଲା ।

'ଯେ ଫୁଲ ଫୁଟିଥିଲା', ସେ ଫୁଲ ଆଉ ମଉଳି ଗଲାନାହିଁ । ଗୋଦାବରୀଶଙ୍କର କବିତ୍ୱ-ସାଧନା ଯେଉଁମାନେ କଳନାକରି ବସିବେ ସେମାନଙ୍କୁ ଏହି କବିତାଗୁଛ ନାନା ସୂଚନା ଦେବାକୁ ସମର୍ଥ ହେବ । ଗୋଦାବରୀଶଙ୍କର ସାହିତ୍ୟ ସାଧନାର ଭିତ୍ତିଭୂମି ରୂପେ ଏହି ପୁଷ୍ପସ୍ତବକର ଉପାଦେୟତା ଯେ ଅତ୍ୟଧିକ, କହିବା ବାହୁଲ୍ୟ ମାତ୍ର ।

ଅଳମତି-ବିସ୍ତରେଣ ।

ଶ୍ରୀପଞ୍ଚମୀ
ଭୁବନେଶ୍ୱର
ତା ୩-୨-୬୮

ଗୌରୀକୁମାର ବ୍ରହ୍ମା

# ସୂଚୀ

# ଉଷା

ବିମଳ ତାରକିତ ପ୍ରାଚୀ କପୋଳେ
ନିସର୍ଗ-ରଙ୍ଗେ ଶୋଭି-ତରଙ୍ଗ ଦୋଳେ;
ପ୍ରସରେ ସଗୌରବରେ କମଳ-ହାସ
ଯଥା ଉଦାର-ହୃଦେ ପ୍ରୀତିସଂକାଶ ।

ଦେଖି  ଗଗନଦ୍ୱାରେ ଜ୍ୟୋତିନିଳୟ
ନିସର୍ଗ ରୁଚି ବର୍ଣ୍ଣି ବିଚିତ୍ରମୟ ।
ତରୁ ଗହଳେ ପକ୍ଷୀ ରାବେ ସର୍ବଥା
ମନସ୍ୱୀ ହୃଦେ ଉଦେ ବିବେକ ଯଥା ।

ବାଳୁତ ରବି ହେମ-ମୟୂଖ-ମାଳେ
ତେଜି ଯାମିନୀ ବାସ ଘୋର ତିମିରେ
ଲୁଚିଲେ ନୀଳାକାଶେ ତାରକାମାଳ
ଆତ୍ମଦର୍ଶନେ ମର-ଆଶା  ପ୍ରକାର ।

ଗଗନେ ହେଲେ ବିଧୁ ପାଣ୍ଡୁରବର୍ଣ୍ଣି
ଦୁଃଖେ ନିପୁତିକରେ ଲଭି ବନ୍ଧନ,
ମୁଦିଲା କୁମୁଦିନୀ ନୟନ ସରେ
ସତୀ-ଜୀବନ ସିନା ପତି-ପଦରେ ।

ଗିରି, କାନନ, ତଟ କୁଞ୍ଜ-ବିତାନେ
ପୂର୍ଣ୍ଣ ବିକାଶେ ପ୍ରେମ-ପୁଲକ ପ୍ରାଣେ
ଶୋଭନ୍ତ ସୁ-ପ୍ରଭାତେ କୁସୁମକୁଳ
ବୈରାଗ୍ୟ ପାଶେ କ'ବା ସୁଗୁଣ ଠୁଳ ?

ହେମ-ଭାସ୍ୱର-କୁସୁମିତ-ନିକୁଞ୍ଜେ
ବିମଳ ତାନେ ଉଷା-ବିହଗ କୂଜେ,
ଉଡ଼ି ବୁଲନ୍ତ ପ୍ରଜାପତି ହରଷେ
ବିବୁଧେ ଯଥା କାବ୍ୟ-ବନ-ଉରସେ ।

କୁସୁମ ମକରନ୍ଦ ସଞ୍ଚିଲେ ଅଳି
ପ୍ରୀତି-ପୁଲକେ ମଧୁ-ତାନେ ଗୁଞ୍ଜରି;
ପ୍ରପଞ୍ଚ ମାୟା ମୋହେ ଲଙ୍ଘି ସନ୍ତତ
ପୁଣ୍ୟ ସଞ୍ଚୟେ ଯଥା ତପସ୍ୱୀ ରତ ।

କୁସୁମ-ସୁରଭିତ ଉଷା-ସମୀରେ
ତଟ-ବିଟପୀ ଛବି ଖେଳାଇ ଉରେ
ଦୋଳେ ସରସୀ ରଙ୍ଗେ ଚଳାଇ ବୀଚି
ପ୍ରଶାନ୍ତ ପ୍ରାଣେ କ' ସେ ପ୍ରେମ ମିଶିଛି ?

ସେ ବୀଚିମାନେ ଫେଇ ଲୋହିତ-କାନ୍ତ
ଊର୍ଦ୍ଧ୍ୱ ବଦନେ ଶିଶୁ-କମଳ-ପନ୍ତ
ଶୋଭନ୍ତ ଶୋଭା-ସାମ୍ରାଜ୍ୟ ଅମ୍ବୁଟ ହାସେ
ଚିନ୍ମୟ ପ୍ରେମେ ସାଧୁ ତନ୍ମୟ କି'ସେ ?

ବୀଚି ପଡ଼ଇ ଲୋଟି ପଙ୍କଜ ଦଳେ
ଆହେମେ ଭକ୍ତେ ଯଥା ମାୟା କୌଶଳେ;
ମାତ୍ର ନ ଲଗେ ତହିଁ ତିଳେ ହେଁ ଜଳ
ନିର୍ଲିପ୍ତ ସାଧୁ ହୃଦ ଯଥା ନିର୍ମଳ ।

ରଚନା କାଳ—୧୯୧୪

# ନିର୍ଝର

ନିକୁଞ୍ଜ ବନ୍ଧୁର ଗିରି-ନିତମ୍ବେ
ପ୍ରାବୃଟେ ଯହିଁ ଚଳ-ଜଳଦ ଚୁମ୍ବେ;
ଝରେ ଗମ୍ଭୀରନାଦେ ଝର ସନ୍ତତ
ମୁମୁକ୍ଷୁ ଚିତ୍ତେ ଯଥା ପ୍ରେମ ଶାଶ୍ୱତ ।

ଆଲିଙ୍ଗି ଶିଳା-ଅଙ୍ଗ ପୁଲକେ ନିତି
ମଧୁ-ସଙ୍ଗୀତେ ଲୋଳ-ତରଙ୍ଗ-ତତି
ଖେଳନ୍ତି ଫେନ-ହାସେ ଉଚ୍ଛୁଳି ଉଠେ
ସରସ ଭକ୍ତି ସିନା ମୁକତି ଫୁଟେ ।

କୁଞ୍ଜ-କୁସୁମ-ମୟ ତଳପତଳ
ଲଙ୍ଘ ଅୟନେ ଘର୍ମ-କାନ୍ତ ଉପଳ,
ଧାବିତ ତରଙ୍ଗିଣୀ ନିମ୍ନେ ସର୍ବଥା
ମରଣ ହେଲେ ବିଶ୍ୱ-ଜୀବନ ଯଥା ।

ଅଙ୍ଗ-ତରଙ୍ଗେ ରଚି ରଜତ-ହାର
ଅରପେ ତୀରଦେଶେ ସ୍ନେହ-ସମ୍ଭାର;
ନ ରହେ ଭେଦାଭେଦ ଯୁଗ-ଜୀବନେ
ପ୍ରେମ ଉଚ୍ଛ୍ୱାସ ଯଥା ଆତ୍ମ-ଦର୍ଶନେ ।

ଚିର ଶ୍ୟାମଳ ତଟ-ବିଟପୀ-ମାଳ
ଅଙ୍ଗ କୁସୁମେ ଯହିଁ ନିତ୍ୟ ଉଜ୍ଜ୍ୱଳ,
ବହେ ନିର୍ଝର ! ତହିଁ ପୁଲକଭରେ
ବୈରାଗ୍ୟ-ଗଙ୍ଗା କି'ସେ ସାଧୁ ଅନ୍ତରେ ?

ନୀର ସ୍ପରଶେ କାହିଁ ତପନ କର
ଝଲେ ବାସବ ଧନୁ କିବା ସୁନ୍ଦର !
ସ୍ତମ୍ଭ, ବେପଥୁ, ସ୍ୱେଦ, ଅଶ୍ରୁ ଯେସନ
ଯତି ଜୀବନେ ହୁଏ ଉତ୍ପାଦନ ॥

ଗୈରିକ ସ୍ରୋତ କାହିଁ ଚଳ-ସଲିଳ
ପରଶ ମାତ୍ରେ କରେ ତନୁ ଆବିଳ ,
ମୋକ୍ଷ ପରଶେ ଯଥା ସାଧୁ କ ପ୍ରାଣ
ପଲକେ ଧୋଇଯାଏ ପାପ-ନିଧାନ ।

ଲତା ଗହ୍ୱଳେ ବହେ ରଜତ-ଧାର
ଭବ-କଳୁଷ-ପଙ୍କେ ମୁକ୍ତି ପ୍ରକାର;
କୁଟିଳା ଗତି ବହେ ଶିଳା ପ୍ରଭାବେ
ଯଥା ନିସ୍ପୃତ ଗତି ଅଟଇ ଭବେ ।

ରଚନା କାଳ—୧୯୧୪

# ପ୍ରଦୋଷ

ବିଜେ କନକ ରଶ୍ମି ବାରୁଣୀ ଭାଲେ
ବର୍ଣ୍ଣି ବିଚିତ୍ର-ମୟ ମୟୂଖ-ଜାଳେ;
ଗ୍ରଇଲା ସ୍ୱର୍ଣ୍ଣ-ପ୍ରଭା ଭୂଧର-ମଥା
ଧୃତି ବିକାଶେ ଦମ୍ଭୀ ମାନସ ଯଥା ।

ବାସର ଶଇଶବେ ଯେ ଛବି ଘେନେ
ବିଳସୁଥିଲା, ଏବେ ବିଳସେ ବନେ;
ଫୁଟେ କୁସୁମ, କାହିଁ କୂଜେ ବିହଙ୍ଗ
ବିଭୁ-ବିଭବେ କି’ ସେ ପୁଲକେ ଅଙ୍ଗ ?

କାହିଁ ତପନ, କାହିଁ ସରେ ନଳିନୀ
ହୃଦୟୁ ପ୍ରେମେ ପିନା କଣା ଏ ବେନି ?
ଭାଷା-ବିରହେ ଏବେ ଶୋଚଇ ସରେ
ପ୍ରେମ-ବନ୍ଧନ ଭଙ୍ଗେ କି’ବା ନ କରେ ?

ରବି ଲୋହିତ କରେ ନୀରଦମାଳ
ହେଲେ ଲୋହିତବର୍ଣ୍ଣ ବନ, ପ୍ରାନ୍ତର;
ମହତେ ଆଶ୍ରି ଥିଲେ ଏପରି ଜନେ
ମହତ ବୋଲାନ୍ତି ଭବ-ପ୍ରାଙ୍ଗଣେ ॥

ଶୀତଳୁ ହେଲା କ୍ରମେ ଶୀତଳତର
ନିଶି ଆଗମେ ଚଣ୍ଡ-ମିହିର କର;
ବନେ ମାତିଲେ ବନଚର ସର୍ବଥା
ନୃପତି-ହୀନ-ଗୃହେ ଦୁରନ୍ତ ଯଥା ।

ଶୁଭ୍ର ଆକାଶ ହେଲା ତମିସ୍ରମୟ
ପବିତ୍ର ହୃଦେ ଯେହ୍ନେ ପାପ ଉଦୟ;
ଶୋଭଇ ଶୁକ୍ର ନିଶି-ମସ୍ତକ-ମଣି
ମୋହାନ୍ଧକାରେ ଯଥା ବିବେକ ମଣି ।

ଦେଖି ଗଗନେ ପତି ଉଦୟ ଲୀଳା
ମର୍ତ୍ତ୍ୟ-ବାସିନୀ ଶଶିପ୍ରିୟା ସରଳା
ପ୍ରେମ ପୁଲକେ ଦେଲା ଅନ୍ତର ଫେଇ
ପ୍ରିୟ ସମ୍ପଦେ କେ'ବା ସୁଖୀ ନୁହଇ ?

ତେଜିଲେ ଉପବନ ମଧୁପକୁଳ
ମରନ୍ଦ-ମଦେ ଯେହୁ ଥିଲେ ଆକୁଳ
ଏପରି ସିନା ଜନେ ବିଭବହୀନ
ହେଲେ, ତେଜନ୍ତି ସର୍ବେ ବନ୍ଧୁର ଧ୍ୟାନ ।

ଉଇଁଲେ ଗୋଟିଗୋଟି ତାରକା ନଭେ
ବିଷୟୀ ପ୍ରାଣେ ଯଥା ଆଶା ପ୍ରଭବେ;
କ୍ଷଣେ ପୁଲକ କ୍ଷଣେ ଯାଆନ୍ତି ଲୁଚି
ଅବା ସେ ମର-ନର-ବିଭବ ସୂଚୀ ।

ସମୀର-ପାରାବାରେ ତନୁ-ତରଣୀ
ଛାଡ଼େ ଉଲୁକ ଶୁଭ ନିମେଷ ମଣି;
ଭ୍ରମନ୍ତି ଚତୁର୍ଦ୍ଦିଗେ କ୍ଷୁଧିତ ପ୍ରାଣେ
ବିଷୟୀ ଜନେ ଯଥା ଆଶା ଗୋପନେ ।

ରଚନା କାଳ—୧୯୧୪



# ଶିଶିର

କାଶ, କମଳ-ହାସ ଲଭି ଜଗତେ
ପ୍ରକାଶେ ଶୀତ ରମ୍ୟ ଶରତ ଅନ୍ତେ;
ବିକଶେ ବିଶ୍ୱପ୍ରାଣେ ରଜତ-ଶିଖା
ନିସର୍ଗ ପ୍ରେମେ ଯତି ମାନସରେ ।

ପ୍ରାବୃଟେ ଥିଲେ ଯେଉଁ ସଲିଳ-ଧାର
ଶ୍ୟାମ ବିକାଶେ ଘୋଟି ମିହିର-କର
କାହିଁ ଚଳନ୍ତି ଶୁଭ୍ର ଅଙ୍ଗେ ଆକାଶେ
ସାରଲ୍ୟ ଯଥା ମାୟା-ମାନସ ଶେଷେ ।

କମଳହୀନ ଶୀତେ ହେବାରୁ ଜଳ
କୁମୁଦ ହେଲା ତା'ର ପୂରଣ ସ୍ଥଳ;
ସ୍ନେହ ଛୁଟିଲେ ଯଥା ସାଧୁ ଅନ୍ତର
ବିରାଗ ଭାବ ହୁଏ ପ୍ରବଳତର ।

କାହିଁ ଫୁଟନ୍ତି ରକ୍ତ କୁମୁଦଚୟ
ଶ୍ୱେତ କୁମୁଦେ କର ଅଲକ୍ତମୟ
ସଜ୍ଜନ ସହବାସେ ଯଥା ଦୁର୍ଜନ
ଲଭଇ ତତ୍ତ୍ୱଜ୍ଞାନ ମହତ ଧନ ।

ସର ସରିତ ହେଲେ ଶୀର୍ଣ୍ଣ ଶରୀର
ବିଭବହୀନ ଯଥା ବିଷୟୀ ନର,
ଫୁଟିଲେ ନୀଳୋତ୍ପଳ ପ୍ରକାଶି ପ୍ରଭା
ନାସ୍ତିକ ହୃଦେ ହରିଭକ୍ତି କି ଅବା ?

ଶୀତ-ସମୀରେ ଗଲା ଲୋମ ଟାଙ୍କୁର
ପାପ ଦରଶେ ଯଥା ହୃଦୟ-ପୁରୀ,
କୁହୁଡ଼ି କଲା ଚତୁର୍ଦ୍ଦିଗ ବେଷ୍ଟନ
ସାତ୍ତ୍ୱିକ ହୃଦେ ଯଥା ଭବ-କଷଣ

ପଡ଼ଇ ଆକାଶରୁ ନିଶି-କାକର
ବର୍ଷନ୍ତ ସୁଧା ଅବା ସୁଧା-ଆକର,
ଧୂଳି-ଧୂସର ହେଲା ପଡ଼ି ଭୂତଳେ
ଅପାତ୍ରେ ସାଧୁ ଯଥା ବ୍ୟବହାରରେ ।

ରଚନାକାଳ—୧୯୧୪



# ନୀତି ମାଳ୍ୟ

ଅହିଂସା ପରମ ଧର୍ମ ବିଶ୍ୱ ମହିମାର
ଅହିଂସା ଜଗତ ଜନ ମୁକ୍ତି-ସ୍ୱର୍ଗଦ୍ୱାର
ଅହିଂସା ଅମର୍ତ୍ତ୍ୟ ନେତ୍ର ବିଶ୍ୱ ଦରଶନେ
ଅହିଂସା ଅମର୍ତ୍ତ୍ୟ ଶକ୍ତି ଦୁରିତ ଧର୍ଷଣେ ।

ସବୁ ପଥ ମଧ୍ୟେ ସାର ଭକ୍ତିପୂତ ପଥ
ଗାନ ମଧ୍ୟେ ବିଭୁନାମ ସଙ୍ଗୀତ ମହତ
ତୃଷା ମଧ୍ୟେ ଶୁଭଙ୍କରୀ ବିଭୁ-ଚିନ୍ତା-ତୃଷା
ରତ୍ନଗଣେ ବିଦ୍ୟା-ରତ୍ନ ନର ଶିରୋଭୂଷା ॥

ଭକ୍ତିଥିଲେ ଆନ ଗୁଣେ କି'ବା ପ୍ରୟୋଜନ
ସତ୍ୟ ଯାର ମୂଳମନ୍ତ୍ର କି କରେ ଦୁର୍ଜ୍ଜନ
ବିଦ୍ୟା ଅଟେ ଯେ ଜନର ଜୀବନ ସମ୍ବଳ
କରି କି ପାରଇ ତା'ର କ୍ଷତି ଧନବଳ ?

ଆଳସ୍ୟ, ମାର୍ଦ୍ଦବ, କ୍ରୋଧ, ନିଦ୍ରା, ଚିନ୍ତା, ଭୟ
କର୍ମକ୍ଷେତ୍ରେ ଅଟନ୍ତି ଏ ହଳାହଳମୟ
ପଳକ ପ୍ରଶ୍ରୟେ ଏହୁ ହୃଦେ ରଚି ବାସ
କର୍ମ ସଙ୍ଗେ କରିଯାନ୍ତି ହୃଦୟ ବିନାଶ ।

କୃତଘ୍ନ ଯେ ଜନ ତାର ଶରୀର ନରକ
ପଦେପଦେ ତା ବଚନ କଷ୍ଟଦାୟକ
ନରକୁଳେ କଳଙ୍କ ସେ ହୀନ-ମତି ପାପୀ
କହେ ଯେ ବଚନ ଆତ୍ମ-ଗରିମାଦ୍ଧ ସ୍ଥାପି ।

ଧର୍ମ୍ମୀ ହୋଇ ହୁଏ ଯେବେ ନିଷ୍ଠୁର, କୃପଣ
କ୍ଷମା ନ କରଇ ଯଦି ଜ୍ଞାନ ବିତରଣ
ଧାର ଯଦି ନ କରଇ ଧାର୍ମ୍ମିକ ଋଣ
ଯୋଗ୍ୟ ସିନା ତାଙ୍କ ନାମେ 'ପଶୁ' ବିଶେଷଣ ।

ବିପଦ ପଡ଼ିଲେ ସାଧୁ ନୋହେ ମ୍ରିୟମାଣ
ବରଞ୍ଚ ଉଜ୍ଜ୍ୱଳ ଉଠେ ଶତଗୁଣେ ଜ୍ଞାନ
ପ୍ରଦୀପ ଶଳାକା ଯଦି ହୁଅଇ ଘର୍ଷଣ
ଉଜ୍ଜ୍ୱଳ ଆଲୋକମୟ କରଇ ଭବନ ।

ଅହିଂସା, ବିଶ୍ୱାସ, ପ୍ରେମ, ସତ୍ୟ, ବ୍ରହ୍ମଚର୍ଯ୍ୟ
ମାନବ-ହୃଦୟ-ପୂତ-ଅମର୍ତ୍ତ୍ୟ-ଐଶ୍ୱର୍ଯ୍ୟ,
ଧରଣୀମଣ୍ଡଳେ ନାହିଁ ଏମାନଙ୍କ ସମ
ହୃଦ ସଦ୍ୟଫଳ-ପ୍ରସୂ ବିଶ୍ୱେ ଅନୁପମ ।

ପର ଉପକାର ଯେହୁ ସାଧନ୍ତି ସତତ
ତା'ର ଉପକାର ସଦା ଜଗତ ନିରତ,
ଦାନକଲେ ସିନା ମିଳେ ବହୁ ଧନ ମାନ,
ତୈଳଦାନେ ଯଥା ଦୀପ କରେ ଜ୍ୟୋତିଦାନ ।

ରଚନା କାଳ—୧୯୧୪



## ପୁଷ୍ପାଞ୍ଜଳି

ପରପାଇଁ ଗଢ଼ା        ମହତ ହୃଦୟ
    ଦୟା, କ୍ଷମା ଉପାଦାନେ,
ଶତ ମାରକଣା        ଗଢ଼ିଥାନ୍ତି ଯିନା
    ଶୀତ-ଧାର-ଭର ଘନେ ।

ଦୁଃଖର ତାଡ଼ନେ        ପ୍ରୀତି ବଢ଼ଥାଏ
    ସୁଖ ପ୍ରତି ହୃଦୟର,
ଅନ୍ଧାର ନ ଥିଲେ        ଆଲୋକର କଥା
    ହୁଅନ୍ତା ଏତେ ଆଦର ?

ସଂସାର ଜଞ୍ଜାଳେ        ଜଡ଼, ମହତର
    ଗୁଣ ହୁଏ ନାହିଁ ହ୍ରାସ
କଣ୍ଟକ ଅଙ୍ଗିନୀ        ହୋଇ କି କେତକୀ
    ନ ବିତରେ ସୁଧା-ବାସ !

ମହତ ମାନସେ        ପ୍ରତିଫଳୁଥାଏ
    ପରଦୁଃଖ, ଶୋକ, ଚିନ୍ତା,
ଅଚ୍ଛୋଦ-ସରସୀ        ତରଳ-ହୃଦୟେ
    ତଟ ତରୁ-ଛବି ଯଥା ।

ଗୁଣି ଗଉରବ ଆପେ ଫୁଟି ହସେ
ଆମୋଦ୍ଧ ଅଯୁତ ପ୍ରାଣେ
ବନର ମାଳତୀ ବାସ କରିବାକୁ
କେହି କି ଯାଆନ୍ତି ବନେ ?

ମହତ ମହିମା ବରିବାକୁ ଯୋଗ୍ୟ
ମହତ ହୃଦୟାକାଶ
ସିନ୍ଧୁ ବିନା କେ'ବା ସମ୍ଭାଳିବ ତାର
ତରଳ-ତରଙ୍ଗୋଚ୍ଛ୍ୱାସ ।

ରଚନାକାଳ—୧୯୧୪



# ଆତ୍ମବଳି

ଅଶୀ ବରଷର ବୁଢ଼ୀଟିଏ ସେ ତ
କୁଟୀର ଆଦର ବିତାଏ ଦିନ
ମନେ ମନ ଗଢ଼ି ଆଦର ଉଦାସେ
ନିତି ଦେଖେ କେତେ ସୁଖ ସପନ ।

ଅନ୍ଧାର ରାତିରେ ହେଲେ ପଥବଣା
ଫେରନ୍ତି ପଥିକେ ଲକ୍ଷି ସେ ଘର
ନଗରର ଶେଷ ସୀମାରେ କାନନ
କାନନ ଶେଷରେ ଘରଟି ତାର ।

ନିତି ଯାହା ମିଳେ ଶାଗ, ପେଜ ଢେନ
ବନଫୁଲ ଫଳେ ପୋଷେ ସେ ପେଟ ।
ନିତି ଯାହା ଦେଖେ ବନ ଛବି ଯେତେ
ପୁଲକେ ଭରଇ ଆପଣା ଚିତ୍ତ ।

ନୟନପିତୁଳ ପରାଣ ସାଥୀ ତା
ଏକଇ ବାଳକ ବରଷ ଦଶ
ସବୁ ଆଶା ବୁଢ଼ୀ ପାଳିଛି ତା ପାଶେ
କରିବ ତା ଆଗେ ଜୀବନ ଶେଷ ।

ପୂଜ କେତେ ଦିଅଁ ବାଞ୍ଛିତ ବସ୍ତୁ
କରି କେତେ ଉପବାସ ଶରମେ
ଡାକି କେତେ ଡାକ ବିଭୁଙ୍କ ଚରଣେ
ପାଳିଛି ପରି ସେ ଜନମ ପଣେ ।

ଦଣ୍ଡେ ନ ଦେଖିଲେ ହୃଦୟଫଗଖାଳ
ଅନ୍ଧୁଣୀ ପରି ସେ ଆକୁଳେ ବସେ
ଲୁହ ବହୁବାର ଦେଖିଲେ ତା ନେତ୍ରୁ
ସତେ କି ପିଣ୍ଡରୁ ପରାଣ ଖସେ !

ଦୂରୁ ମାଡ଼ିଆସେ ସାଇଁ ସାଇଁ ତାନେ
ବନପାରେ ଅଗ୍ନନକ ବରଷା
ଆସୁଥାଏ ଢେଣେ କଳାଶାଢ଼ୀ ପିନ୍ଧ
ଯାମିନୀ ସୁନ୍ଦରୀ ବିକଟ-ବେଶା ।

ଖଣ୍ଡକଟି ଧରି ପୁଅ ଯାଇଥାଏ
ଚେର, ମୂଳ ଖୋଳି ବନ ସେ ପାରେ
ବୁଢ଼ୀ ବସିଥାଏ ପରାଣ ଆକୁଳେ
ଦୁଆର ଆବୋରି କରେଖି ତାରେ ।

ଥପ ଥପ ବାରି ଝରୁଥାଏ ଶିରୁ
ପଦାଙ୍ଗିଗଲେ ସେ ନୟନମଣି
ଲୁହ ଦୁଇଧାର ବୁହାଇ ବୁଢ଼ୀଟି
ସେନେହେ ଚୁମ୍ବଇ ବଦନ ପୁଣି ।

ଗରିବ ଘରର ଗରିବ ରାନ୍ଧଣା
ଆଗ ବାଢ଼ିଦଏ ପୁଅକୁ ଧରି
ବଳିଲେ ଖାଏ ସେ ଦ' ମୁଠି ପେଟକୁ
ନ ବଳିଲେ ଥାଏ ଉପାସ କରି ।

ଆପଣା କାନରୁ କାନଏ ପାରି ସେ
ଆପଣା ବାହାରେ ଥାପି ତା ଶିର
କୋଳେ ଧରି ବୁଢ଼ୀ ଗଢଟି ପୁହାଏ
ଦନପାକ ତାକୁ କରଇ ଗେଲ ।

ଉପାସ ବୋଲି ତା ନ ଆସେ ମନକୁ
ଧନ ଖାଇଥିଲେ ପୂରେ ତା ପେଟ
ଧନ ଶୋଇଥିଲେ ଶୁଏ, ସେ ଧନର
ଲହୁ ଦେଖି ତାର ଝରେ ରକତ ।

ଧନ ଛୁଟବଟି ତା' ନନ୍ତ ଆଗେ ଆଗେ
ବନ ପରବତେ ସବୁଠି ଦେଖେ
ଅନ୍ଧାର ରାତିରେ ଘୋର ବରଷାରେ
ଶୁଣି ପୁଅଡାକ କି ବେଗେ ଭୋକେ ।

କାନରେ ଦଉଟି ଫଳ ମୂଳ ଘେନ
ନନ୍ତି ନଗରୁ ସେ ସଉଦା ଆଣେ
ଫଳ ମୂଳ ଖାଏ, ଫଳ ମୂଳ ବିକେ
ଫଳ ମୂଳ ତାର ସଂପତ୍ତି ଜାଣେ ।

ଦେଶଯାକ ଆଜ ଭୟେ ଥରହର
ବିଦେଶୁ ବଇରୀ ଆସିଛନ୍ତି ମାଡ଼ି
ସଇନେ ଦଳି ଏ ସକଳ ସଂପତ୍ତି
ସାରାଦେଶ ବଳେ ଜିଣିବ ବୋଲି ।

ଗୁପତେ ପଶି ସେ ବେପାର ବଣିଜେ
ଘରଂ ଘର ମେଳ ଫଠାଇ ରଙ୍ଗେ
ତୋଳିଛନ୍ତି ଗୁପତେ କୋଟି ତରବାରି
ସହସ୍ର ସଇନ ଆଦର ସଙ୍ଗେ ।

ଗାଆଁରୁ ଗାଆଁକୁ ଚଳନ୍ତି ସଇନ
ଝୁଲି ହତିଆରି ବିକଟ ବେଶ
ଗାଆଁରୁ ଗାଁକୁ ଭାଜନ୍ତି ପରଜା
ଉଚ୍ଛନ୍ନ ହେଲାଣି ଅଧିକ ଦେଶ ।

ମାଆ ଗୁଡ଼ଯାଏ ପୁଅକୁ ଡାକନ୍ତେ
ପୁଅ ନ ଦେଖଇ ଘରଯା ଆଉ
ଘାଇ ଘାଇ ଆଉ କାହିଁ ଭେଟ ନାହିଁ
ସାଗରଦେଶେ ମାତେ ଏ ଝଡ଼ବାଉ ।

ଭୂଇଁରେ ଗଲାଣି ମିଶି ପକାଘର
କୁଟୀର ବା କାହିଁ ହୋଇବ ବାର
ଗରବର କଥା କଏ ବା ପଟ୍ଟରେ
କୋଠିପନ୍ତି ଆଜ ଦାଣ୍ଡ ଭିକାରୀ ।

କାଲି ହସୁଥିଲା ଯେ ବନ ପ୍ରାନ୍ତର
କନକ କ୍ଷେତରେ ଦିବସ ନଶି
ଆଜ ସେ ଥାନରେ ବହୁଚି ବକଟେ
ପରଜା ଉପଚ ରୁଧିର ଆସି ।

ବନ ବାଟେ ଆଜ ବିଧବା କାନ୍ଦୁଚି
ଶିଶୁ ସଡ଼ ମରେ ସରଣୀ ବାଡ଼େ
ପାଶେ କେହି ନାହିଁ ଦୟା ବହି ତନେ
ପାଣି ଟୋପେ ଢାଳଦେବାକୁ ତା'ରେ ।

ଉଠୁଥିଲା ଯହିଁ ହାସ ସନମାନ
ସୁଖ ଗଉରବେ ସରଗ ଶିଖ୍ର
ଆଜ ସେ ନଗରେ ନର-ମାଂସ ଲୋଭେ
ସହସ୍ର ସଇନ ଯାଆନ୍ତି ବୁଲି ।

ଫୁଲ ତୋଳି ଫୁଲ ଡାଲିରେ ସଜାଡ଼ି
ବନ୍ଧୁପାଦ ପୂଜେ ଯେ ଠାବେ ବାଳା
ନାଚନ୍ତି ଶୃଗାଳେ ଆଜ ସେ ଉଦ୍ୟାନେ
ନରରକ୍ତେ ଭରି ଉଦର ସାରା ।

ଛନ୍ଦ ବନ୍ଧରଣେ କୁଳ ସୀମନ୍ତିନୀ
ନୁପୁରଧ୍ୱନି ନାଚ ଉଠଇ ଯହିଁ
କାନନ ପଶୁଏ ଆଶଂକା ବିଘୋର
କଲେଣି ତାହାକୁ କାନନ ଭୂଇଁ ।

ପୂଜା ଉପହାରେ ମନ୍ଦିରେ ମନ୍ଦିରେ
ଉଠୁଥିଲା କାଲି ଶତ ବାଜଣା
ଆଜ ପଥ ଭୂଲି ବିଜନ ପଥିକେ
ଶିଳା ଖଣ୍ଡ ନତ ହୁଅନ୍ତ ବଣା ।

ରଚି ବାଲିଘର ଖେଳୁଥିଲା ଶିଶୁ
କାଲି ଯେ ସରଣୀ-ଶିରେ ଉଦାସେ
ଲତାଗୁଳ୍ମେ ଆଜ ସାପ ଖେଳେ ତହିଁ
ଥରଇ ପଥିକ ପାଦ ପରଶେ ।

କୂଳ ତରଙ୍ଗିଣୀ ତଟିନୀ ପଠାରେ
ମୁଖ ଦେଖେ ବସି ଶାର୍ଦ୍ଦୂଳ ଜଳେ
କେତେ ଯେ କଙ୍କାଳ ବଣ ବିଲ କୋଳେ
କେତେ ହାହାକାର ପଲ୍ଲୀପ୍ରାନ୍ତରେ ।

ଘର ଭାଙ୍ଗି କଏ କୁଡ଼ିଆ ଆଦର
ଠାବେ ଠାବେ ପ୍ରଜା ଅଛନ୍ତି ପଡ଼ି
ବିଦେଶୀ ରାକ୍ଷସ ବଇରୀ ତାଡ଼ନେ
ସୋଦର-ସେନେହ ଗଲେଣି ଭୂଲି ।

ଆସିଛୁ ବଇରୀ ଜିଣିବ ସ୍ୱଦେଶ
ଭାବିଛୁ ପରା ସେ ପାଳିବ ପ୍ରଜା
ଧିକ ଧିକ ତୁ'ରେ ପାମର ବିଦେଶୀ
କାହାପାଇଁ ଏତେ ସମର-ସଜ୍ଜା ?

କାହାପାଇଁ ଏତେ ତାଡ଼ନା ବିଦେଶୀ !
ଭାବିଚ କି ଚିର ରହିବ ଏଠି ?
ଉଡ଼ିବ କି ତବ ବିଜୟ ପତାକା
ଚିରକାଳ ଧରି ଗଗନେ ଉଠି ?

କେତେ ଗଲେ ବୀର ଏ ଭୂମି ପରଶି
କେତେ ଜାତି ଗଲେ ଏହାରି କୋଳେ
କେତେ ଯେ ରୁଧିର-ସରିତ ବହିଲା
ଏହି ପ୍ରଜା ହିନ୍ଦୁ ଏ ଭୂମିତଳେ ।

ମାଳମାଳ କେତେ ଗଢ଼ିଲା କଙ୍କାଳ
ଦଳ ଦଳ କେତେ ଆସିଲେ ସେନା
ଦୁଇ ଦିନେ ଆସି ଦୁଇ ଦିନେ ଗଲେ
ଏତିକି ରହିଲା ଅଯଶ ବାନା ।

ଫେରି ଫେରି ଆଜ ହାଣନା ପରଜା
ରହୁ ଏ ସ୍ୱଦେଶ ଶ୍ୟାମଳେ ହସି
ନ ବୁଲ ହେ ଆଉ ହିଂସା ପ୍ରଣୋଦନେ
କ୍ରୂର କରେ ଧନ ଲୋଲୁପ ଆସି ।

ପୁଅ ଯାଇଥିଲା କୁଟୀର ବାହାରେ
ବେଳ ଦଶ ଘଡ଼ି ଫେରୁଚି ଘରେ
ଝାଳ ଗମଗମ କୁଞ୍ଚିତ କୁନ୍ତଳ
ଗୋଟି ଗୋଟି ହୋଇ ପଡ଼ୁଚି ଘରେ ।

ଥର ଥର ତାର ଚପଳ ପଲକେ
ଥରେ ଥରେ ହସେ କାନନ ଭୂଇଁ
ବିଜନେ ଗାଏ ସେ ପବଣ କାହାଣୀ
କମ୍ପିତ ଉରସ ଲୋତକେ ଧୋଇ ।

କର୍ମିତ କରେ ସେ ବାଡ଼ ଖଣ୍ଡ ତା'ର
ପିନ୍ଧିଲା କାନିକ ପରଶେ ତଳ
କହିବ ବୁଢ଼ୀକି ସମର-ବାରତା
ଫେଇଦେବ ତାରେ ହୃଦୟ ଭାର ।

କହିବ; ଶୁଣିଲା ରଜନ ଡାକରା
ସମରେ ଯିବାକୁ ପରଜା ଯେତେ
ଢାଳିବାକୁ ଶିର ବଇରୀ ସମ୍ମୁଖେ
ନ ଦେବାକୁ ଦେଶ ବିଦେଶୀ ହାତେ ।

ଯାବତ ଜୀବନ ନ ହେବେ ଅଧୀନ
ରାକ୍ଷସ ବିଦେଶୀ ନ ନେବ ଯଶ,
ଯାଉ ଅବା ରହୁ ମରନ୍ତୁ ଏ ଜାତି
ରହିବ ତ ହେଲେ ସଂସାରେ ଯଶ ।

କହିବ ସେ ଯେତେ ସୋଦର ସଇନ
ଅଛନ୍ତି ସଜାଡ଼ି ଖଡ଼ଗ ହାତେ
ସଞ୍ଜ ନ ହେଉ ସେ ପଶିବେ ସମରେ
ପଶିବେ ଅନଳେ ବନ ପର୍ବତେ ।

ପୁଣି ସେ କହିବ "ଯାଉଥିଲି ମା' ଗୋ
କାଢ଼ିଦେଲେ ତହୁଁ ସେ ସେନାପତି
ଏକଇ ସନ୍ତାନ ବାପ ମାଆଙ୍କର
ନ ହେବେ କଦାପି ସଇନ ଏଠି ।"

କହୁ କହୁ ଲୁହ ଆସିଲା ଉଚ୍ଛୁଳି
ଶୁଣିଥିଲା ଗୀତ ଗାଇଲା ତାନେ
କମ୍ପାଇ ସାଗର, ଗଗନ, ପବନ,
ବନ ପରବତ ଜନନୀ ନାମେ ।

ଝମ ଝମ ଦୁନ୍ଦୁଭି କମ୍ପେ
—ଆସ କେ ସମରେ ଝାସିବ ରେ
ଏ ଯେ ମଙ୍ଗଳ ବାରତା      ଗୌରବ ମରଣ
ପ୍ରେମର ମରଣେ ଭାସିବ ରେ ।

ଉଚ୍ଛୁଳେ ସିନ୍ଧୁ      ଉଜ୍ଜ୍ୱଳ ଗଗନେ
ଘନ ଘନ ଶ୍ୱାସ ପବନେ ପବନେ
ତୁ କ ମା' ସନ୍ତାନ,      ତୁ କ ମା ଜୀବନ
ଆଜ, ଅଶ୍ରୁ କ ମାଆ ନାମେ ଆସିବ ରେ ।

ଥର ଥର ବୁକୁ ଝର ଝର ଲୁହ
ବୁଢ଼ୀ ଗୁହାଁଅଛି ଦୁଆରେ ବସି
ବେଳ ଦଶଘଡ଼ି ନ ଆସିଛି ଧନ
କେତେ ଶଙ୍କା ମନେ ଯାଉଛି ମିଶି ।

ବନ ଦୂରପଥେ ଶୁଭିଲା କା ପାଟି
ବଢ଼ିଲା ଆବେଗ ଦ୍ୱିଗୁଣ ମନେ
ସଇନେ କ ଅବା ଆସିଲେଣି ଫେର
ପଟ୍ଟଣ ସଂଖାଳ ରହିଲା କେଣେ ?

ପଟ୍ଟଣ ସଂଖାଳ ! ପଟ୍ଟଣ ସଂଖାଳ !!
ଷୋଳ ଶିର ଆଜ ଯାଉଚ ଥର
ଧନ ଆସି ଉଭା ଦୁଆରେ ଏବେ ତ
ଥର ଥର ଡାକେ 'ମୋ ମାଆ ବୋଲ୍' ।

"ଆହା ଧନ ମୋର ଚୁମ୍ବିଲା ବଦନ
ବାଧିବଣି କେତେ ଆସ ମୋ କୋଳ
ଫୁଲ ଫଳ ସବୁ ବାସୀ ପାଲଟିଲା
ଏତେବେଳ ଯାଏଁ କାହିଁ ଥିଲ ରେ ।"

ଟାଣ ନା ଟାଣ ନା ଆଉ ଗୋ ସେନେହେ
ଧନ ଆଜ ନୁହେ ତୁମର ଧନ
ତୁମର ଯେ ମାଆ ଜନମ ଭୂଇଁର
ଦୁଃଖ ଦେଖି ଧନ ଦୁଃଖେ ମଗନ ।

ସେନେହମୟୀର ବିକଟ ଛବିଟି
ପରାଣେ ତାହାର କରୁଚି ଖେଳା
ଡାକ ନା, ଡାକ ନା!, ଡାକ ନା ଗୋ ଆଉ
ଜନନୀ ପାଇଁ ସେ ଚେତନା ହରା ।

ଧରିବ ଖଡ଼ଗ ପଶିବ ସମରେ
ଦିଅ ଗୋ ବିଦାୟ ନ ଡାକ ଆଉ
କହିଲା ବାଳକ "କେସନେ ଆଉ ଗୋ
ସହିବ ଏ ପାପ ବିଦେଶୀ ଦାଉ !"

"ଯାଉଥିଲ ହସି ସୋଦର ଗହଳେ
ଯାଉଥିଲେ ସେ ତ ଖଡ଼ଗ ଧରି
ମନାକଲେ ମତେ କେବଣ ଯୁବକ
ବୁଢ଼ୀ ମାଆ ତାର ଅଛନ୍ତି ବୋଲି ।

ନୁହେ କି ମାଆ ମୁ ଜନନୀର ପୁଅ
ନୁହେ କି ଏ ଦେଶେ ଘରଟି ମୋର
ନୁହେ କି ଏ ତନୁ ଏ ଦେଶେ ପାଳିତ
ଅଟେ କି ତୁମେ ଏ ଦେଶୁ ବାହାର ?

କୋଟି ଭାଇ ଗଲେ ହେଲ ଅଭାଜନ
ସଭିଏଁ ହସିଲେ ଢାଳିଲେ ଲହୁ
ସଭିଏଁ ଗାଇଲେ "ବନ୍ଦେ ମାତରମ୍"
ମୁହିଁ କି ନୁହେ ଲୋ ତାହାର ପୁଅ ।

ବଇରୀ ବଧି ସେ ଆସିବେ ବାହୁଡ଼ି
କରିବେ ଗରବ ମୋହରି ପାଶେ
କେମନ୍ତେ ଧରି ଏ ନିର୍ଲଜ୍ଜ ବଦନ
ଯାପିବି ଏ ପାପ-ଜୀବନ ଦେଶେ ।

ସଭିଏଁ ଗାଇବେ "ବନ୍ଦେ ମାତରମ୍"
ମୁଁ କି ନ ଗାଇବି, ଧିକ ମୋ ପ୍ରାଣ !
କିପାଇଁ ମାଆ ଲୋ ମୋଠାରେ ବିଧାତା
ଏଡ଼େ ନିର୍ଦ୍ଦୟ, ମୁଁ ପାପୀ, ହୀନ ?

ଧପଧପ ଥରେ ଅବଳା ଧମନୀ
ଥପ ଥପ ଲୁହ ବଦନେ ଝରେ
"କି କହିଲୁ ଧନ ! ଚିହ୍ନିଲୁ କି ମାଆ
ମାଆ ପିରତି କି ପରାଣେ ଖେଳେ ?

ବନେ ଉପବନେ ଜନନୀ ରୂପଟି
ଦେଖିଚୁ କି ଧନ ଆଜ ନିରେଖି ?
ବୋଲିଲୁ କି ଆଜ "ବନ୍ଦେ ମାତରମ୍"
ରାକ୍ଷସ ବିଦେଶୀ ତାଡ଼ନା ଦେଖି ।

ମାଆ ମାଆ ବୋଲି ଡାକୁଥିଲୁ ନିତି
ମାଆ ପରିଚୟ ପାଇଲୁ ଆଜ
ବନ ପରବତେ, ସାଗରେ, ଭୂଧରେ
ତୋର ମୋର ମାଆ ଅନନ୍ତ ରାଜ ।

ତୋର ମୋର ମାଆ ସଭିଙ୍କ ଜନନୀ
ମୁଁ ନୁହେ ତୋ ମାଆ ଆଜଠୁ କହୁ
ତୋର ମୋର ମାଆ ଜଗତ ଜନନୀ
ତୋର ମୋର ମାଆ ଏ ଦେଶେ ଅଛୁ ।

ମାଟି ପଥରର ନୁହେ ଏ ସ୍ୱଦେଶ
ତୁଚ୍ଛ ନୁହେ ଏଠି ପାଣି ପବନ
ସବୁଥିରେ ବନ୍ଧେ ଜନନୀ ଆଶିଷ
ସବୁଥିରେ ବନ୍ଧେ ଆମର ପ୍ରାଣ ।

ପଶିବୁ ସମରେ ବସିବ କୁଟୀରେ
ଜନନୀ ଚରଣ ପୂଜିବ କେମନ୍ତେ
ବଧିବୁ ବଇରୀ ପଡ଼ିବୁ ସମରେ
ମୁଁ କି ପଡ଼ିଥିବ ଅନ୍ଧାରକୋଣେ ?

ରକତ ଶୋଷଇ ବିଦେଶୀ ରାଇଜ
ଧର୍ମ ମାର୍ମ ଆଜି ସଭିଏଁ ଏକା
ସମସ୍ତଙ୍କ ପ୍ରାଣେ ବାଧିଛି ବାବୁ ରେ
ଆଜି ଏ ବିଦେଶୀ-ଶାସନାଶଂକା ।

କେତେ କଉଣଲେ ଦେଶ ଉଜୁଡ଼ି ଗଲେ ଏ ସମରେ ପରାଣ ଯାଉ
ଏତେ ଦିନେ ତୋର ପରାଣେ ବାଧିଛି
ଏଣିକି ତୁ ଆଉ ବାଳୁତ ନୋହୁ ।

ଏଣିକି ତୁ ଆଉ ନୋହୁ ମୋ ବାବୁ ରେ
ଆଜଠୁ ତୁ ମୋର ଜନନୀ ପୁଅ
ମାଆକୁ ଚିହ୍ନି ତୁ ଚିହ୍ନାଇନ୍ତୁ ମୋତେ
ଘୁଞ୍ଚିବ ଜାଣି ରେ ବିଦେଶୀ ମୋହ ।

ଦେଶ ଭବିଷ୍ୟତ ଧନ ତୁ ରାଇଜେ
ଦେଶର ଗରବ ତୋହର ପାଶେ
ତୋ ଯେହ୍ନ ମୁକତି ତୋ ଯେହ୍ନ ଦେଖିବ
ଜନନୀ ଚରଣ ଅଶୀ ବରଷେ ।

ଦେଇଥିଲେ ପିତା ଖଡ଼ଗ ମୋ କରେ
ଗୁପତେ ରଖିଛ ତୋହର ପାଇଁ
ଅଶୀ ବରଷରେ ପୂରିଲା ତପସ୍ୟା
ଘେନ ଗୋ ତର୍ପଣ ଜନମ ଭୂଇଁ ।

ଥରେ କଣ୍ଟକ ମୁଁ ତୋର ସଙ୍ଗୀନ !
ସମରେ ମିବାକୁ ନକର ହେଳା
କହି ବୃଦ୍ଧୀ ଦେଲା, ଖଡ଼ଗ ବସାଇ
ଦୁଇଖଣ୍ଡ ହେଲା ଆପଣା ଗଳା ।

ଦୁଇ ଖଣ୍ଡ ହେଲା ଅବଳା ଶରୀର
ଛୁଡ଼ିଗଲା ମରବନ୍ଧନ ଗୋଟି,
ଆସରେ ବଇରୀ ପାପବଳ ଘେନ
ଦେଖରେ ଶୋଣିତ-ତର୍ପଣ ଏଠି ।

ଦେଖରେ ସ୍ୱଦେଶେ ଜୀବନର ଧାରା;
ଦେଖରେ ଜୀବନେ ଅନନ୍ତ ପ୍ରେମ,
କି କରିବ ପାପ—ଖଡ଼ଗ କମାଣ
ଜନମ ଭୂଇଁର ନେବାକୁ ମାନ ?

ଚିର ଅବିଶ୍ୱାସୀ ଆସ ହେ ବିଦେଶୀ,
ଥରେ ଦେଖିଯାଅ ନୟନ ଫେଇ,
ଜନମ ଭୂଇଁର ମୁକତି ଦୁଆର
ଫିଟିବାକୁ ଆଉ ବିଳମ୍ବ ନାହିଁ ।

ପ୍ରଥମ ତର୍ପଣେ ପୁଣ୍ୟ ଆତ୍ମବଳ
ବୃଦ୍ଧା ଶିର ଲୋଟି ପଡ଼ୁଛୁ ତଳେ
ଶୋଣିତ ଜର୍ଜ୍ଜର ଖର କରବାଳ
ଚମକି ଧଇଲା ବାଳକ କରେ ।

ଚମକି ଗ୍ରହିଁଲା ଉତ୍ତର, ଦକ୍ଷିଣ
ଚମକି ଗ୍ରହିଁଲା ପ୍ରାଚୀ, ପ୍ରତୀଚୀ
ଖ୍ରୀମ ସେ ଚଳନେ ସଚେତକେ କାନନ
ଗିରି ବନମାଳା ଉଠିଲେ ନାଚି ॥

ଥର ଥର ମୁଖ, ଲୋଳିତ କୁନ୍ତଳ,
ଥର ଥର ତା'ର ଖଡ଼ଗ ଗତି,
ଫର ଫର ଉଡ଼େ ଗଗନେ ଅଞ୍ଚଳ
ନାଚିଲା ଜୀବନେ ସମର ପ୍ରୀତି—

ଯାବତ ବଇରୀ ନ ବଧିବ କରେ,
ଯାବତ ସ୍ୱଦେଶ ନ ହେବ ମୁକ୍ତ,
ନ ଫେରିବ ଆଉ, ଦେଇ ଆତ୍ମବଳ
କରିବ ବଇରୀ ଖଡ଼ଗ ସିକ୍ତ ।

ରଚନା କାଳ—୧୯୨୦



# ଉତ୍ତରାୟଣୀ

ପିକ-ବନ୍ଧୁ ଚୂତମୂଳେ ଦରହାସ ଭରେ
ଯେବେ ପଲ୍ଲୀ ବିଳାସିନୀ ବାଳାଏ ପୁଲକେ
ବାଇଥିବେ କଣ୍ଠବୀଣା ସଙ୍ଗିନୀ ଗହନେ
ଉଜ୍ଜ୍ୱଳ ନିକୁଞ୍ଜ-ବେଦି ଆନନ୍ଦ ଆଲୋକେ ।
ବାତ ବିଚଳିତ ଗୁଳ୍ମ ପଲକ ତରଙ୍ଗେ
କୋମଳ ତଳପେ ମୁଦେ ପିକବଧୂଗଣ
ପ୍ରତିଡାଳେ ଉଲ୍ଲସାଇ ଶ୍ୟାମ-ଧରା-ଅଙ୍ଗ
କରିଥିବେ ଗାନଛଳେ ତବ ଆବାହନ ।
ଜନନି ଗୋ ! ଲଭିଥିବ ମରତ ସମ୍ପଦେ
କୁଞ୍ଜରାଜ ବିରାଜିତ ଏ ଆଶ୍ରମ ପଦେ । ୧ ।

ତରୁ-ପ୍ରଣୟିନୀ-ଲତା ଶ୍ୟାମଳ କପୋଳେ
ବିକଶାଇ ଗୋଟି ଗୋଟି ହେମ ଗୌର କଳି
ମର୍ତ୍ତ୍ୟ ଅଭିଷେକେ ତବ ପ୍ରେମାନନ୍ଦ ଭୋଳେ
ଚରଣେ ମା’ ଢାଳିଥିବେ ସେ ଶୁଭ-ଅଞ୍ଜଳି ।
ସେ କାଳେ ପୁଲକଭରେ ମଧୁପ-ନିକର
ମୋହନ-ଗୁଞ୍ଜନେ ବାଇ ମଙ୍ଗଳ-ମହୁରୀ
ଲଭିଥିବେ ତବ ପୁଣ୍ୟ ପ୍ରୀତି ସୁବିମଳ
ଦେଉଥିବେ ଉଷା-ଶ୍ୟାମା ଶୁଭ ହୁଳହୁଳି ।
ତୁଟି ନାହିଁ ସେ ସମ୍ପଦ ସେ ମୋହନ ଶିରୀ
ଫୁଟେ ଫୁଲ, ଗାଏ ଭୃଙ୍ଗ ଦିବା ବିଭାବରୀ । ୨ ।

ଅନନ୍ତ ପ୍ରେମର ଲୀଳା ବିଶ୍ୱ ମହିମାର
ପ୍ରାଣ, ମନ ଅଗୋଚର ଅମୃତ ବିଭବ
ଶାଳାବିଷ୍ଟ ସ୍ୱର୍ଣ୍ଣଶିଖ ସୈକତ ପ୍ରାନ୍ତର
ଚୁମ୍ବିତ ପଲ୍ଲବାଧରେ ଖେଳେ ଅଭିନବ ।
ନିତ୍ୟ ସୁଷମାର ପୂର୍ଣ୍ଣ ବିକାଶ ମନ୍ତର
ଫୁଟଇ ସମୀରେ କୁଞ୍ଜେ ରଜତ ସଲିଳେ ।
ଅସ୍ତିତ୍ୱ ହରାଇ ବୁଲେ ପ୍ରେମାନନ୍ଦରେ ନର ।
ସେ ସୁଧା ସମ୍ପଦେ ପୂର୍ଣ୍ଣପ୍ରାଣତା ଲଭିଲେ ।
ବାସନା-ଅଚଳ ଚୂଳ ସ୍ୱର୍ଣ୍ଣ ସିଂହାସନେ
ଦେଖେ କେତେ ଭବିଷ୍ୟତ ତୋ ପୀଠ ପୁଳିନେ ।୩।

ବୈଦିକ କନକ ଛନ୍ଦେ ମୁଖର ଗଗନ
ମରମ ଦୁନ୍ଦୁଭି ଲୀଳା ମର୍ତ୍ତ୍ୟ ପରବାସେ
ବ୍ରହ୍ମବାଦୀ ବାସନାର କର୍ମ ନିମନ୍ତ୍ରଣ
ବାନ୍ଧିଛୁ ମା ସ୍ମୃତି-ସୂତ୍ରେ ବର୍ତ୍ତମାନ ପାଶେ ।
ଆଶା-ଘଣ୍ଟିକା ବନ୍ଧ ବିରାଜେ ତୋ ପାଦେଶ
ଏ ଭଗ୍ନ-ହୃଦୟ ମା ଗୋ ! ନବ କର୍ମଭୂମେ
ଚିନ୍ତିତ ସ୍ପନ୍ଦିତ ପୁଣି ବ୍ୟାକୁଳ ହତାଶେ
ଅତୀତ ସ୍ୱର୍ଣ୍ଣଧିକୂଳେ ସାହସ ସଂଯମେ
ଏ ସ୍ୱର୍ଣ୍ଣ-ସୈକତ ଖାଲେ ଦେଖରେ ନୟନ !
ଅତୀତ ଅମୃତ ସ୍ମୃତି, ଭବିଷ୍ୟ ଭବନ । ୪ ।

ରଚନା କାଳ—୧୯୧୭



# ବିଦାୟବେଳେ

ଖେଳା କି ସରିଲା, ଭାଙ୍ଗିଲା ଏ ମେଳା
ଥିବେ ବନତରୁ ବନେ
ନ ମିଳିବ ଆଉ ଶିଶୁ କଳ-ଗୀତ
କୋକିଳ ପଞ୍ଚମ ତାନେ ।
ବହିବ ଶାଳଆ ମେଲି ତାର କାୟା
ଫୁଟିବେ କୁସୁମ ରାଶି
ପ୍ରଭାତ ସପନେ ମୃଦୁ ସମୀରଣେ
ଯିବେ ବା ସରଗେ ଭାସି !
ଯିବ ପାନ୍ଥ ତାର ଅଳସ ନୟନେ
ଅନାଇ ପାଦପ ଶିରେ
ଦୋଚହ୍ଲା ପଲକେ ବ୍ୟଥା କି ମରମୁ
ଅପସରୁଥିବ ହେଳେ !
ବିଜନ ତଳପେ ଅଳପେ ଅଳପେ
ଥିବେ ତୃଣେ ମଥା ଟେକି,
ପଲ୍ଲବ ଗହଳୁ ବିନ୍ଦୁ ଅଶ୍ରୁଧାର
ଝରିବ ତା ଅବଲୋକି ।
ନିଜନ ନିଶୀଥେ ଏ ନିକୁଞ୍ଜ ପଥେ
ଉଠିବ କେତେ ଯେ ଗାନ,
ଏ କଥା ସବୁଟି ଭାଇ, ଏ ମରମେ
ରହିବ ହୋଇ ସପନ ।

ଦୁ' ଦିନର ଲବ ଲୀଳା ଖେଳା ବୋଲି
ଛେଡ଼ିବେ ବାଟଚାଇ ଲୁହ,
କହିବ ଶାଳଆ ବରଷା ରାତିରେ
କଥା କେତେ ଗୋପନୀୟ ।
କାହିଁ କେତେ ଦୂରୁ ତା ବୁକୁ ପ୍ରସାର
ଆସଇ ପଲକ ଧାଇଁ
ମାରିବେ ଲେଖା ତା ପ୍ରତି ବାଲୁ ତଳେ
କେତେ କଥା କାହା ପାଇଁ ।
ଏ ଯେ ଧୂଳି ତଳେ ନୂଆଁଇ କପାଳ
କେତେ ଥର ଥିଲେ ଶୋଇ,
ଗଲେ କେତେ ଥର ତୋଳି କରବାଳ
ବିଦାୟ ସଙ୍ଗୀତ ଗାଇ ।
କେତେ ତରୁଣୀର ଅରୁଣ ପରାଣ
ପଡ଼ିଚି ରକତେ ଢଳି,
ଶୁଣିଚି ଏ ଶୀତ ସିକତା-ତଳପ
କେତେ ଶିଶୁ କରତାଳି ।
କେତେ ଅଭିସାର ମନ୍ଦିର ଦୁଆରେ,
ବାଜିଛି ଆଳତି ବାଜା,
କେତେମନ୍ତେ ଆସି ଉଭା ହୋଇଛନ୍ତି
କାର କେତେ ହୃଦ-ରାଜା ।
କେତେ ବିଜୟିନୀ ରକତ ନଗାଡ଼
ଏ ତଳେ ଅଛନ୍ତି ମିଶି,
ଭଙ୍ଗା ଇଟା, ଭଙ୍ଗା ପଥର ସିନାଟି
ଗାଇବେ ସେ ଗୀତ ରଶି !
ଜାଣେ ସବୁ କାଳ, ମୂକ ସବୁ ଏଥି,—
ମୂକ ପରା ଘଣ୍ଟିଶିଳା,
କରଚି ପଥର ହୃଦୟଟି ତାର
ଦେଖି ଏ ମରତ ଲୀଳା !

ଖେଳା ସିନା ଆଜ ସରିଲା, ଭାଇ ହେ
ମେଳା ସିନା ଗଲା ଭାଙ୍ଗି
ଭାଙ୍ଗପାରେ କି ଏ ହୃଦେ ଗଢ଼ା ଯାହା
ସ୍ମୃତିର ସରଗରାଜି ?
ଖେଳାଇ କୋମଳ ଚରଣ ଏ ତଳେ
ଯିବେ ସିନା ଶିଶୁ ଗୁଳି,
ସେ ଚରଣ ଚିହ୍ନ ଏ ଭୂଇଁ ତଳପେ
ରଖିବ ପ୍ରଦୀପ ଜାଳି !
ସେ କର ପରଶେ ଏ କମ୍ର ପଲ୍ଲବ
ଅଟିବା ନୋହିବ ସିନା,
ସ୍ମୃତି ସେ ଅଟଇ ଦେବ ଯେବେ, ମନ
କରିବ ବା କେ ତାମନା ?
ବସି ତରୁତଳେ ନିଶି ପୁହାଇବା
ନୋହିବ ଆଉ ଏ ବନେ,
ହିନୁ ହିନ ହସି ଉଠୁଥିବ ଖାଲି
ସ୍ମୃତିଟି ହୃଦୟାସନେ !
ନ ଶୁଭିବ ଆଉ ଗୁ ରୁ ହୃଦୟର
ଏ ମଧୁ ଗମ୍ଭୀର ବାଣୀ
ବନ ଫୁଲ ଭୁଲେ ଆସୁଥିବ ହସି
ଯେବେ ଧୀରେ ଉଷାରାଣୀ ।
ପ୍ରଦୋଷ ସମୀରେ ଚଳାମେଘ ତଳେ
ବସି ଘଣ୍ଟିଗିଳା ଚୂଳେ
ଦେଖି ନ ପାରିବା ଆଉ ସେ ମୂରତି
ସୁଦୂର ଚିଲିକା ଜଳେ ।
ଶୋଇ ଶିଳାଶେଯେ ଅଳସ ସପନ
ଲଭୁଛି ଏ ହୃଦ ଯେତେ
ଖେଳ ଏ ସରିଲା ଫିଟିପଡ଼ ଆଜ
ମାରବେ ମାନସ ଛଟେ ।

ପ୍ରଶ୍ଚାତ୍ତୀ କପୋଳେ ତାରା ଉଇଁବାର
ଚଇତ ପ୍ରଦୋଷ କୋଳେ
ଦେଖା ସିନା ହେବନାହିଁ ଆଉ ଥରେ
ଘଣ୍ଟଶିଳା ଶିଳା ତଳେ ।
ସେ ସ୍ମୃତିରେ ହବା ରଜନୀ ସୋହାଗେ
ଫୁଟିବେ କି ଅଗଣିତ
କେତେ ତାରା, କେତେ କୁମୁଦବାନ୍ଧବ
ହସାଇ ହୃଦ-ଜଗତ ।
ଲୁଚ ଗୁହା ତଳେ ପ୍ରତିଧ୍ୱନି ଛଳେ
ଉଠିବେ କୁହାଟି ମୃଗ
ଖୋଜିବେକି ନର ଶିଶୁ ପରିଚୟ
ବୁଲି କେତେ ଯୁଗ ଯୁଗ ।
ହ'ଦିନ ଖେଳାଏ ସପନ ପରାଏ
ହସି ହସି ଗଲା ଚୁଲି,
କେତେ ଆଶା, କେତେ କଳପନା ପଥେ
ପଗଣି ପଡ଼ିଲା ଢଳି !
କେତେ ଦେବସୁତ ଆସିଲେ ଦୁଆରେ
ଦେବତା ଆଶିଷ ଘେନି,
ମରତ ମାନବ ଶିଶୁ ସିନା ତାଙ୍କୁ
ବୋଲନ୍ତି ନରେ ନଜାଣି ।
ଦେବତା ସୋହାଗେ ଏକୁ ଆନ ବଳେ
ସେ ଶିଶୁ ବାସନା ରାଶି,
ଅଧରେ ଅଧରେ ଅମର ମଧୁରେ
ବଶ୍ମ ଉଠୁଥିଲା ଭାସି ।
ଅଳିକଲା ଅଳି ନିକୁଞ୍ଜ ଉହାଡ଼େ,
ଗାଇଲା କୋକିଳ ଗାନ,
ଆସିଲେ ଋତୁଏ ଘେନି ଅର୍ଘ୍ୟଥାଳି,
ପଥର ଲଭିଲା ପ୍ରାଣ ।

ବାଲି ଧୂଳି ଏ ଯେ ବନ୍ଦ୍ୟ ଏ ବନ୍ଦ୍ୟ ଏ
ଉଠିଲେ ଜୀବନେ ଥରେ—
ସରସ୍ୱତୀ ତୀରେ ସାମ-ଗାନ ଅବା
ଉଚ୍ଚାରିଲେ ବ୍ରହ୍ମଗୃହୀ !
ଯୁଗ ଯୁଗାନ୍ତର ମରମ ମନ୍ତ୍ରର
ଫୁଟିଲା ଶ୍ରୀଗୁରୁ ମୁଖେ,
ବିକଶିଲା ଶିଶୁ ସରଳ ଅନ୍ତର
ସେ ପୁଣ୍ୟପ୍ରଭା ଆଲୋକେ ।
ସରିଲା ଏ ଖେଳା, କୁଞ୍ଜ ପଥେ ଆଜ
ଯିବେ ଚଳି ବ୍ରହ୍ମଗୃହୀ
ଭାଜିଲା ଏ ମେଳା, ସଜନ ନିକୁଞ୍ଜ
ନିର୍ଜନ ହୋଇବ କାଲି ।
ଶ୍ମଶାନ-ପୂଜାରୀ ପରି ଏଥେ ବୁଲି
ଦେଖିବେ ବାଟୋଇ ଜନେ
ଏକୁ ଆନେ ଧୀରେ ହେବେ କୁହାକୁହି
ଏକୋଟେ ଆପଣା ମନେ—
"କେଉଁ ପୁଣ୍ୟବନ୍ତ ମହାତ୍ମା ସେ ଜନ
ବାଛିଲେ ଏ ଦେବସ୍ଥଳୀ
ଦେବପୀଠେ ଦେବମୂରତି ଥାପିବେ
ମନେଥିଲେ ନିତି ଭାଳି
ଟେକି ତରୁତଳେ କୁଟୀର ସୁନ୍ଦର
ଦେଲେ ଦୀକ୍ଷା ଶିଷ୍ୟ-ଜନେ,
କାହିଁ ନ ଦେଖିଲା ନୟନେ ଏକଥା,
ଥିବ ବା କାହିଁ ଭୁବନେ !
ମରତ ମାନବେ ଦେବତା ବିଭବ
ଓହ୍ଲାଇ ଆଣିବା ପାଇଁ
କେତେ ଦିବା କେତେ ରଜନୀ ଭାଳିଲେ
ପ୍ରଭୁଙ୍କ ଚରଣ ଧ୍ୟାୟି !

ତରୁପତ୍ର ତଳେ ଶିଶିର ପଡ଼ଏ
ନୟନ ଲୋତକ ଢାଳି
ଦିବା ବିଭାବରୀ ଗଙ୍ଗା, ଗୋଦାବରୀ
କଳ୍ପନା ଆଣିଲେ ତୋଳି
ଗୋଟି ଗୋଟି ଶିଷ୍ୟ କପାଳ ପରଶି,
ଧୋଇ ଶୁଦ୍ଧ ଅଶ୍ରୁ ଜଳେ
କହିଲେ ସେ କଥା ଲୁଚି କି ପାରିବ
ଏ ମର ହୃଦୟ ତଳେ ?"
ଏ ନିକୁଞ୍ଜ ବନ-ବିହାର ବିଳାସେ
ଖେଳ ଅବସାନ ଏ କି ?
ନବ କିଶଳୟୁ ନ ଉଠୁ ପୁଲକି
ଅଧାରେ ରହିବ ବାକି ?
ଫୁଲେ ବସି ଅଳି ଶେଷ ନ କରୁଣୁ
ତା ମଧୁ-ଗୁଞ୍ଜନ-ଧାରା;
ପିକ ବସି କୁଞ୍ଜେ ବିଶ୍ୱ ବିମୋହନେ
ନ କହୁଁ ତା ହୃଦ ଭରା;
ଖେଳସାରି ଆନ କଳ୍ପନା ବିହାରେ
ଯିବାକୁ ହେଲା କି ବେଳ,
ଅଧେ ବହି ଅଧେ ଧୂଳି ତରୁପତ୍ରେ
ରହିଲା ଏ ପରିମଳ !
ଦୂରର ବାଟୋଇ ଦୂରେ ଯିବେ ଚାଲି
ଧରି ସ୍ମୃତି ହୃଦପଟେ,
କେତେ ବେଶେ ସ୍ମୃତି ଦେଖାଦେଉଥିବ
ଦୁର୍ଗମ ଗହନ ପଥେ !

# କପିଳବାପା ଘର

ଘୋର ବରଷା କାଳ, ଗରଜେ ଦଶା
ମାନବ ବୁଝୁନାହିଁ ପ୍ରକୃତି ଭାଷା ।
ସମୀର ଡାକଦିଏ ସଲିଳ ଧାରେ—
ମୋ ଗତ ଟାଣକଥା ଦେବ କି ବାରେ ?

କହ ବରଷା, ଆଉ ନ ପାରେ ରହି
ବରଷ ବରଷ ତ ଗଲାଣି ବହି ।
ମୋ ଗତ କେତେ ଥର କଲଣି ଏଥି
ବୁଝି ଲନାହିଁ ତଳେ ମାନବ ମତି ।

ଅଜାଡ଼ ହେ ବରଷା, ଅଜାଡ଼ ଖରେ
ଶୀତଳ ତବ ଅମ୍ବୁରାଶି ଏ ପୁରେ
ସମ୍ଭାଳ ଧରିବାକୁ ନାହିଁ ତ ଗୃହ
ଖସିଗଲାଣି କାନ୍ଥବାଡ଼ ସକଳ ।

ଏ କାଳେ ଦେବ ବାରେ ପରଶି ମୁହିଁ
ଏକାଳେ ଦେବ ତୁମେ ଜଳେ ଭସାଇ
ଶିର ନୁଆଇଁ ଏଠି ପଡ଼ିବ ତଳେ
କାହା କୋଣାର୍କ-ଶିଖ କାଳ କବଳେ ।

ଜାଣ କି ଇତିହାସ ବରଷା ସତେ
ଏ ପୁରେ କିବା ଲୀଳା ହେଲା ଜଗତେ ?
ଶୀତ, କାକର, ମଧୁ, ଗ୍ରୀଷ୍ମ, ଶରତ
ସକଳ କାଳେ ମୁହିଁ ଅଛି ମରୁତ

ବାର ମାସରେ ତୁମେ ମାସେକ ଆସି
ଯାଉଚ ସିନା ବେଳେ ବେଳେ ପରଶି
ପରଶିଅଛୁ ମୁହିଁ ଏ ପୁର ମାଟି
ବଶିଷ୍ଠ ନମିଷେ ଟି ଦିବସ ଗ୍ରଣ୍ଡ ।

ଆଜଟି ମନେପଡ଼େ ଶୁଣ ବରଷା—
ସେ କଥା କହିବାକୁ ନାହିଁ ମୋ ଭାଷା ।
କାଳ ସାଗରେ କେତେ ବୁଦ୍‌ବୁଦ ସର
ଏକଇ ବୁଦ୍‌ବୁଦ ଏ କୁଟୀର-ଶିଖା ।

ମାଟିର ଘର ଏ ଯେ ମାଟିର ବାଡ଼
ଲୁହା ପାଷାଣେ ଏ ତ ନଥିଲା ବଡ଼
ଅମୂଲ୍ୟ ବଇଭବ ନଥିଲା ଏଥି
ଏକଇ ଥିଲା ଏଥି ମାନବ ଯତ୍ତ ।

ତୋଳିଲା ଘର ସେ ତ ଗଢ଼ିଲା ପୁର,
ଆଶାରେ ପ୍ରଫୁଲ୍ଲ ହୃଦ-ମୁକୁର
କେତେ ବିଚିତ୍ର ଛବି ଆଙ୍କିଲା ବୁକେ
ଆପଣେ ବଢ଼ କରି ପଲ୍ଲୀ-ମୂଳକେ ।

ଏ ପୁରେ ହସିଲା ତା ପ୍ରୀତି ପ୍ରତିମା
ଏ ପୁର ଦେଖିଗଲା ବିଭବ ସୀମା ।
ଜୀବନେ ପ୍ରୀତି ବୋଲି ବୋଲନ୍ତି ଯାରେ
ନ ଥିଲା ତିଳେ ହେଲେ ଊଣା ଏ ପୁରେ ।

ଦୁଇଟି ପଦ୍ମପାଦ ଏ ଭୂଇଁତଳେ
ଭାବଇ ସତେ କାଲିପରି ବା ଚଳେ !
ଦୁଇଟି ଚଳଚକ୍ଷୁ ସୋହାଗ ଭରା
ଛବାଡ଼ିସପୁଥିଲା ପରଗ ଏଳା ।ିେ

ଏ ଭିତ୍ତିପଟେ କାହା କର-ପଲ୍ଲବ
ଆଙ୍କି ଲା କେତେ ଛବି କି ଅଭିନବ !
କା ଗୃହ ଗୃହାଣି ସେ କା'ହୃଦ ତଳେ
କି ଗୁପ ଦେଇଗଲା ଜାଣ କି ତଳେ ?

ସେ ଲାଗି ସିନା ଆଜ କହେ ମୁଁ ଡାକି
ଆହେ ବରଷା ଶତଦୂତ ବଳେକି
ମିଶାଇ ଦେବ କାନ୍ଦୁ, ଗୃହ ମଝି ରେ
ବିସ୍ମୃତ ଧାମଗର୍ଭେ ସ୍ମୃତି କି ଧୀରେ ।

କହିଲା ବରଷା ଡାକ ହେ ପ୍ରିୟ ସମୀର
ମୁଁ, କି, ଜାଣେ ସାନ ବଡ଼ ନଘ ପାରିବାର ।
ବନେ, ଉପବନେ, ଗିରି ଶିଖରେ ପରଶି
ଡାଳ ଯାଉଥାଏ ଖାଲି ସ୍ନିଗ୍ଧ ବାରିରାଶି ।

ତୁମେ ସିନା ପୁରପଥେ ବିଶ୍ୱରନ୍ଧ୍ରେ ବୁଲ
କେତେ ଭାବେ କରୁଥାଅ, କେତେ ରୂପେ କେଳ ।
ଆଜ ଏ ଯେ ସମାଗ୍ରର କହ ମୋତେ ଡାକି
କହ ପୁଣି ଅଛି ଯେବେ କହିବାକୁ ବାକି ?

ଉତ୍ତରେ ବଖାଣେ ବାତ ଶୁଣ ହେ ବରଷା
ଏ କୁଟୀରେ ବାନ୍ଧିଥିଲା ଜଣେ ଆସି ବସା
ମାନବ ଜନମ ପଥେ, ବଡ଼ ସାଧୁ ପ୍ରାଣ
ପାଇଥିଲା ଜାଣେ, ଗୀତା ଭାଗବତ ଜ୍ଞାନ ।

ବିଶାଳ ସେ ବଂଶତରୁ, ସେ ତରୁର ଡାଳ
ଶେଷେ ଏବେ ଭାଜିଗଲା ରହି କେତେ କାଳ ।
ନିଜହାତେ ସେ ମାନବ ରୋପି କେତେ ତରୁ
ପାଳିଥିଲା ଶୁଣେ ଏବେ ଲୋକ ବଚନରୁ ।

ନିଜହାତେ ରୋପିଥିଲ ଦେବଭୂମେ ଗୁର
ନିଜହାତେ ଖୋଳିଥିଲ କୁଆ, ବଣି, ପାର ।
ଗୋ ସେବାରେ ମନପ୍ରାଣ ଦେଇ ଦିବା ରାତି
ଅରଜି ଥିଲା ସେ କେତେ ଦୟା ଧର୍ମ ଖ୍ୟାତି ।

ଆପଣା କୁଟୀର ଆପେ ଗଢ଼ିଥିଲ ହାତେ
ମୃତ୍ତିକା ପାଷାଣେ ପ୍ରାଣ ମିଶାଇ ନିରତେ
ଶେଷେ ଚାଲିଗଲ ଦୂରେ—ଦୂରୁ ଦୂରାନ୍ତରେ
ଜାଣନ୍ତେ ମାନବ ଯହିଁ ଯାଇ ନାହିଁ ପାରେ ।

ସେ କୁଟୀରେ ଉର୍ଣ୍ଣନାଭ କଲେ କେତେ ବସା
ଲୀଳାକଲେ ଦେଖିଛି ମୁଁ କେତେ ମାଛି, ମଶା
ସେ ଭିତ୍ତିରେ ଓଦାକରି ଦେଲେ ଢାଳି ବାରି
ଏବେ ମୋ ପରଶେ ସେ ତ ଢଳିଗଲା ପରି ।

ଢାଳ ଢାଳ ବାରି ତୁମେ ଢାଳ ଧୀରେ ଧୀରେ
ଧୀରେ ପରଶିବ ମୁହିଁ ଏ ଭଙ୍ଗା କୁଟୀରେ ।
ଧୀରେ ଧୀରେ ଢଳି ଏବେ ଛୁଇଁବ ଭୂତଳ,
ଦେଖାଇବ ଏ ସଂସାରେ ଅନିତ୍ୟ ସକଳ ।

ଅନିତ୍ୟ ମାନବ ଏଠି ଦୁଇ ଦିନ ପାଇଁ
ଦୁଇ ଦିନ ପାଇଁ ଲୀଳା କରିଯାଏ ରହି ।
ଗଲାବେଳେ ନିଜ ତନୁ ନିଜେ ଯାଏ ଛାଡ଼ି
ଦେଖ ଏ କୁଟୀର ଖଣ୍ଡି ଗଲା ଏବେ ପଡ଼ି ।



# ଅବକାଶ-ଶେଷ-ଦିବସେ

କହି ଯା' ଶାଳଆ ତରଙ୍ଗ ପ୍ରାଣ ମୋହନ ତାଳେ
ଗାଇ ଯା' ବିହଗ ନିମିଷେ ଶ୍ୟାମ-ଘିଲେଖି-ଘିଲେ ।
ଫୁଟି ଯାଆ ଉଷା-କୁସୁମ ପଲ୍ଲୀ ନିକୁଞ୍ଜ ଭରି
ଅବକାଶ-ଶେଷ-ଦିବସେ ନବ ବିଭବ ଧରି ।
ଯେତେ ଏ ସୋହାଗ ସମ୍ପଦ ନେଇ ମେଲ୍ଣି ସଙ୍ଗେ
ଢାଳିବ କାଲି ଏ ପରାଣ ଆନ ବିଭବେ ରଙ୍ଗେ ।
ବେଳୁଁ ବେଳ ମନେ ଖେଳିବ ଯେତେ ପଲ୍ଲୀ-ବିଭବ
ସ୍ମୃତିପଟେ ଦେଖି ନିଧଞ୍ଜ-ତରୁ, ଅନନ୍ତ-ନଭ ।
ଗାଇବାର ବନ-ବିହଙ୍ଗ ପଲ୍ଲୀ କୁଟୀର ପାଶେ
ଦିରିହାସ ପ୍ରାଣେ ଶୁଣିବ କାଲି ଦୂର ବିଦେଶେ ।
ଲତାକୋଳେ ପୁଷ୍ପ ରଜରେ ଦୋଳା-ମିଳିନ୍ଦ-କେଳି
ସ୍ରୋତବେଗେ ସ୍ମୃତିପଟେ ମୋ ପ୍ରାଣ ଉଠିବ ପୂରି ।

ଗାଇ ଯା' କାନନ-ବିହଙ୍ଗ ହୃଦ-ଉଦନ୍ତ ଯେତେ
ଲତା ଶ୍ୟାମଳିତ ଗହନ ଶିଳା ବନ୍ଧୁର ପଥେ ।
ଜୀବନ ସରିତ ଉରସେ ମୃଦୁ-ମନ୍ଦ-ଲହରେ
ଢାଳଦେରେ ସୁଧା-ସଙ୍ଗୀତ ଫୁଲ-ପିରତି ଭୁଲେ ।
ଉହି ଉହି ରବି-ଗଗନେ ଉଦୁଉଦିଆ ଖରା
ଧୂସରିତ-ଦୂର-ଗହନ ବନ-ଶ୍ୟାମଳ-ଧରା ।
ଫେରୁଛି କୁଟୀରେ ପୁଲକେ ଗାଇ ହୃଦୟ ଲେଖା
"ଅବକାଶ-ଶେଷେ-ଦିବସେ" ଆଜି ଏଇ ମୋ ଦେଖା ।
କାଲି ତ ଫୁଟିବ ଏ ତଳେ କେତେ ଶୋଭା-ସମ୍ପଦ
ବହିଯିବ ମୃଦୁ ସମୀରେ ଶତ ବିହଙ୍ଗ ଛନ୍ଦ ।

ଅଧର କମ୍ପାଇ ଉଷତେ ପଲ୍ଲୀ-କୁମାରୀକୁଳ
ଗୋଟିଗୋଟି ନେବେ ଉଦାସେ ତୋଳି
                                        ଯେତେ ଏ ଫୁଲ ।
ପୂଜିବେ ବାଲୁକା-ଶଙ୍କରେ ଶାଳାବନ୍ଧୀ-ପୁଳକେ
"ମୋ ପ୍ରଭୁ ସେ" ଗାଇ ହରଷେ ଭକ୍ତିପୂତ ଧିଆନେ ।
ବସିଥିବେ ବୋଉ ଦୁଆରେ କ୍ଷଣୁ କ୍ଷଣେ ଅନାଇ
ଛୁଡ଼ିବାକୁ ଗଣ୍ଡି ଧନରେ ପାଠ ପଢ଼ିବାପାଇଁ ।
ବାରୁଣୀ ଜଳଦେ ଖେଳିବେ ଯେବେ ଦିବସ ପନ୍ତ
ଫେରିବି ଏ ମୋର କୁଟୀରୁ ଦେଇ ପଦେ ପ୍ରଶାନ୍ତ ।
ଯେତେ ପ୍ରିୟ ସାଙ୍ଗ-ସରସା ପ୍ରାଣ ପୁଲକଭରେ
ଅଧାବାଟେ ଦେଇ ବାଟୋଇ ଫେରିଯିବେଟି ଘରେ ।
ଗୁହିଁଥିବ ପଥେ କାହିଁ ମୋ ପ୍ରାଣ ପ୍ରତମ ଭାଇ
କେତେ ଆଶା ପ୍ରୀତି ସେନେହ ହୃଦ-ଆବରି ଦେଇ ।
କାହିଁକି ପାରିବ ତାହିଁରେ ଆଉ ମନ ସମ୍ବନ୍ଧ
ବାଳୁତ ବୟସୁ ଯେ ହୃଦେ ହୃଦ ସେନେହ-ଅନ୍ଧ ।

ଶୟନେ ସପନେ ବିହାରେ ଦୂର ବିଜନ ପଥେ
ଜୀବନ ବନ୍ଧୁ ମୋ କରମ ସଖା ଦେଖେଁ ନିରତେ ।
ହସ ହସ ମୁଖେ ସରଳ-ସ୍ନେହ-ମଧୁର ବାଣୀ
ଫୁଟି ମୋ ଶ୍ରବଣ-ମୁକୁରେ ଉଠେ କେତେ ଉଜାଣି ।
ଅବକାଶ ଶେଷ ଦିବସେ ଘରୁ ଫେରିଲାବେଳେ
ଆଶିଷିବେ ପ୍ରାଣ ସୋଦର ସୁଧା-ସ୍ନେହ ମନ୍ତ୍ରରେ ।
ବେଳୁବେଳ ଦେଇ କୋମଳ ଦୃଷ୍ଟି କିଶୋର ଭାଲେ
କେତେ ଯେ ମରମ ବାରତା ଢାଳିଦେବେ ଆଦରେ ।
"ମନେ ରଖିଥିବୁ ଭାଇରେ ପଲ୍ଲୀ କୁଟୀର ତୋର
ଯେତେ ଶଇଶବ ସଖାଏ ପ୍ରାଣ ପ୍ରିୟା ସୋଦର ।
ଯେଣୁ ଥା ଶ୍ରବଣ-ପିପାସା ପ୍ରାଣ ପୁଲକଭରା
କହୁଥା ଦି'ପଦ ବଚନ ଦୂରେ ଯାଉଛୁ ପରା ।



# କନ୍ଦର ଗାନ

କେତେ ଯେ ତରଙ୍ଗ ପୁଳକେ ପିଟିଲ୍ କା’ଆଗେ ସାଗର
ଦିବା ଯାମିନୀ
କେହି କି ବୁଝିଲେ ତା ହୃଦ ବେଦନା ଶୁଣିଲେ କି କେ’ବା
ତା ହୃଦବାଣୀ ?
କେତେ ଯୁଗ ଧରି ବିପିନୁ ବିପିନେ ବୁଲିଲ୍ କୋକିଳ
ତୋଳି ତା ତାନ
କରୁଣେ କି ଆଗେ ରଥାଙ୍ଗ ମିଥୁନ ଚରଣ-ପ୍ରସାରେ
ଗାଇଲେ ଗାନ ?
ପ୍ରଦୋଷ ତିମିରେ କି ଆଗେ କୁମୁଦୀ ନୀରବେ ଫେଡ଼ିଲ୍
ନୟନ ହସି
ମାଧବୀ-ମଣ୍ଡପେ କି ସରୁ ସୋହାଗେ ଗାଇଲ୍ ମଧୁପ
ଫୁଲେ ରହସି ?
ଗିରି-ଦରୀ ତେଜ ବୀଚୀମାଳା ହୃଦେ ତଟିନୀ କା’ ଆଗେ
କାଟିଲ୍ ବାଟ
ଅନୁସରିଲ୍ କି ତା ହୃଦ ପାଶେ କେ ପାଷାଣ-ବନ୍ଧୁର-
ଗିରି-ସଙ୍କଟ ?
କୋଟୀ ଯୁଗ ଅନ୍ତେ କେଉଁ ଅଜ୍ଞାତର ମହାନଭ ତଳେ
ଶୁଭିଲ୍ ବାଣୀ,
କେଉଁ ଜଳଧିର ଅନନ୍ତ-ପୁଳକେ ଥରି ଥରି ଫୁଟି—
ଉଠେ ରାଗିଣୀ ?

କାହା ବୀଣାତାରେ ମୁଗ୍‌ଧ ଗଗନ ସ୍ତବ୍‌ଧ ଧରଣୀ,
ପୁଲକେ ଗୃହେଁ ?
(ସେ ତ) ବନ୍ଧୁ ହୃଦୟର ଅନନ୍ତ ବାସନା ଏକା ବୀଣା-ତାରେ
ଉଦାସେ ଗାଏ ।
ଜଗତ ହୃଦୟେ ଫିଟିଲା କି ଦେଶେ ପଦ୍ମଶୁ ପଦ୍ମଣେ
କା' ଆଶା-ବନ୍ଧ
ପଲକେ ପଲକେ ଖେଳାଇଲା ଚମକେ ଅନନ୍ତ ଆବେଗେ
ଭାବ-ପ୍ରବନ୍ଧ ।
ବୁଝିଲା ଜଳଧି ତା ହୃଦ-କାହାଣୀ ଯେତେ ଗାଇଥିଲା
ଲଭିଛି ଆନ
ମାଧବୀ-ମଣ୍ଡପେ କୋକିଳ ଶୁଣିଲା ଚିର ପରିଚିତ
ଜୀବନେ ଗାନ ।
ଆଶାର ହୃଦୟ ଫିଟିଗଲା କିବା ? ରଥାଙ୍ଗ ହୃଦୟ
ଆନ ପରଶେ
ବିରହବହ୍ନି ଭେଦି ଦେଖିଲା କୁମୁଦୀ ତା' ହସ-ଇତର-
ଜୀବନେ ଭାସେ ।
ତରଙ୍ଗେ ତରଙ୍ଗେ ଧାଇଁଛି କା'ଗାନ ମହା ଅମ୍ବୁନିଧି
ମହା ପୁଲକେ ?
(ସେ ତ) କବିର ହୃଦୟ ରଙ୍ଗିଣୀ କବି-ବୀଣା-ତାରେ ଅନନ୍ତ-ପୁଲକେ
ମରି ଜୀବନେ ।



# ନବ ବର୍ଷେ

ଏ ଜୀର୍ଣ୍ଣ ବିପଞ୍ଚୀ ବକ୍ଷ          ଅଜ୍ଞାତ ସୋହାଗେ
ଗାଅ ନାହିଁ ପଥିକ ବିଜନେ
ଏ ଜୀର୍ଣ୍ଣ କୁଟୀର ଭଳେ          ଦେଖ କମ୍ପା ଆଉ
କ୍ଷୀଣ ଆଶା ଅଳସ କମ୍ପନେ ?
ଶିଥିଳିତ କଣ୍ଠେ ଆଉ          ଥର ଥର କମ୍ପା
ଢାଳ ଏ ଯେ କରୁଣ ସଙ୍ଗୀତ
ଲୋଚନ କୁଞ୍ଚନେ ଗୃହିଁ          କ ଆଶେ ସୁଦୂରେ
ଭଳେ ବସି କ'ବା କ୍ଷୀଣ ଚିତ୍ତ ।
ଉନ୍ମୁକ୍ତ ପ୍ରଶାନ୍ତ ନଭେ          ବାଜିଲଣି ବୀଣା
ଖେଳିଲଣି ଅନନ୍ତ ମୁଖର
କେଉଁ ଦିଗ୍‌ବଳୟ କୋଳେ          ଚପଳା ସୋହାଗେ
ନାଚିଲଣି ସ୍ୱର୍ଣ୍ଣ ଆଶା ଫେର ।
ବିଶ୍ୱ ପ୍ରାଣେ ପ୍ରାଣ ଢାଳ          ଭବ ଭବୋଚ୍ଛ୍ୱାସେ
ଖେଳେ ନର କର୍ମ ଭରସେ ଆଜି
ଶନ୍ଦ୍ୟ ସଂପଦେ ଭରି          ଦିଗନ୍ତ ବିସ୍ତାରି
ମରୁଶୈଳ ବନ-କୁଞ୍ଜ-ରାଜି ।

ଏ ଜୀର୍ଣ୍ଣ କୁଟୀର ନୁହେ ବାସ ମାନବର—
କ୍ଷୀଣ ଆଶା ପଥିକ ପ୍ରହରୀ
ଏ ତପସ୍ୱୀ-ମର ଚନ୍ଦ୍ରା ଶବଳତ ତାନେ
ଦୂରୁ ଆସେ ହଳାହଳ ଧରି ।
ଏ ବିଶ୍ୱ ପଥିକ ମୁହିଁ ଅନନ୍ତ ପ୍ରେରଣେ
କୁଟୀରି ମୋ ମହା ଉନ୍ମୁକ୍ତତା
ସଙ୍ଗୀତ ମୋ ବନଗିରି ଝଳାମ୍ବୁ ବାରିଧି
ସ୍ରୋତସ୍ୱିନୀ ଅତ୍ୟନ୍ତ ସିକତା ।
ଏ ମହା କୁଟୀରେ ବସି ଏ ମହା ସଙ୍ଗୀତ
ଯାଉ ମିଶି ଏ ମହା ସମ୍ପଦେ
ଆସ ହେ ଅନନ୍ତ ଦୂତ "ନବବର୍ଷ" ପ୍ରାଣେ
ପୁରୁ ବାଞ୍ଛା ତବ ଆଶୀର୍ବାଦେ ।



# ସ୍ମୃତି

୩୫

ଚଞ୍ଚଳ ନ ଯାଅ ମନୁ ଡାକିଲେ ଆସନା
କିଏ ତୁମ୍ଭେ ଢାଳ ହୃଦେ ଅନନ୍ତ ବାସନା ।
ଦେଖାଅ କି ରହସ୍ୟ ଗୋ ନିତ୍ୟ ଲୀଳାମୟୀ
ଏକାଧାରେ ସୁଖ ଦୁଃଖ କାହିଁ କଲା ବନ୍ଦୀ ।

ବାଳକ ଲଳିତ ପ୍ରାଣେ ବୃଦ୍ଧର ମାନସେ
ଯୁବକ ମଧୁର ହାସ୍ୟ ମୋହନ ବୟସେ ।
ବସି ଛଦ୍ମବେଶେ ଦେବି ! ଜାଗ ଅନୁକ୍ଷଣ
କ୍ଷଣୁ କ୍ଷଣେ କରେ ଚିନ୍ତା ଯବନି ପତନ ।

ଅତୀତର କେତେ ଗାଥା ସୁଖ ଦୁଃଖ ଯୁତ
ଭବିଷ୍ୟ ମଧୁର-ଲୀଳା ଅନନ୍ତ ବିସ୍ତୃତ,
ପାଦପେ ବଲ୍‌କଳ ପ୍ରାଏ ଜଡ଼ିତ ତୋ ଅଙ୍ଗେ
ବିଷାଦ, ବିଳାପ, ସୁଖ ସମ୍ପଦ ପ୍ରସଙ୍ଗେ ।
ଉଠାଅ ମୋ ଜୀବନର ଆଦ୍ୟ ଯବନିକା
ଗାଇବି ବିଷାଦେ ସୁଖେ ବିସ୍ମୃତ ଦାୟିକା ।



# ବାଣୀ-ବନ୍ଦନା

ଅମଳ-କମଳ-କାନ୍ତ          ମାତଃ ! ବୀଣାପାଣି
ଜ୍ଞାନ-ଭାନୁ ପ୍ରକାଶିନୀ          ମୋହାନ୍ଧନାଶିନୀ ।
କରୁ ତୁମ୍ଭ ଅଭ୍ୟର୍ଥନା          ଏ ଶୁଭ ବାସରେ,
ସନ୍ତାନଦାୟିନୀ ମାତଃ          ଦେଜ ସୁଚିତ୍ତରେ ।

ବିରାଜ ମା ସନାତନୀ          ହୃଦୟ-କନ୍ଦରେ
ସ୍ଫୁରୁ ସେ ମଧୁ ବଚନ          ସନ୍ତାନ-କଣ୍ଠରେ ।
ଉଠୁ ତବ ନାମ ଗୀତି          ଦିବସ ରଜନୀ
ଆନନ୍ଦରେ ଘୋଷୁ ମନ          ସେ ଅମୃତ ବାଣୀ ।

ଦେଜ ମାତଃ ଜ୍ଞାନ ସୁତ          ଭକ୍ତି-ପୁଷ୍ପ-ହାର
ଆନ କିବା ଅଛି ପଦେ          ଦେବୁ ଉପହାର ।



# କବି

ଅନନ୍ତ ପ୍ରତିଭାଶାଳୀ ହେ ମର୍ତ୍ତ୍ୟ-ପ୍ରବାସୀ
ବାଣୀସୁତ ଶାନ୍ତିପ୍ରିୟ ଅମୃତପ୍ରୟାସୀ
ଦୈବତ ବାଞ୍ଛିତ ତବ ମାନସ ବିକାଶ
ତୃପ୍ତିକରେ ନିମିଷକେ ଜଗତ ମାନସ ।

କେ କହିବ ନର ତୁମ୍ଭେ, ମାନବ ରୂପରେ
ଲୀଳାକର ହେ ଅମର ମର ଜଗତରେ ।
ଅକଳ୍ପ୍ୟ ବିଦୂଷା ତବ ଅଚିନ୍ତ୍ୟ ଧାରଣା
ଧନ୍ୟ ତବ ଜୀବନର ବିମଳ ସାଧନା ।

ଭ୍ରମିପାର ମରୁଭୂମେ କଳ୍ପନାର ବଳେ
ମଧୁବାତ ଆନ୍ଦୋଳିତ ସରସୀ ସଲିଳେ ।
ଶୁଷ୍କ ଦ୍ରୁମେ ଖଚପାର ନୟନ ପଲକେ
ମଧୁପ-ଗୁଞ୍ଜିତ ଫୁଲ୍ଲ କୁସୁମ ସ୍ତବକେ ।

ଶାନ୍ତ ଅଭିଯାନେ ଆଜ ଦେଖେ କେତେ ଛବି
ଖେଳଇ ଅନ୍ତର ତବ ଭାବ ଅନୁଭବି ।



# ପିତା ମାତା

ପିତା ମାତା ଜୀବନର ପ୍ରତ୍ୟକ୍ଷ ଦେବତା
ଜୀବନ-ସମ୍ବଳ, ସୁଖ-ସଂପଦ ବିଧାତା ।
ନିର୍ବିକାର ଚିତ୍ତେ ପୁଣି ଅମ୍ଳାନ ବଦନେ
ପାଳନ୍ତି ସନ୍ତାନେ ସେହୁ ପରମ ଯତନେ ।

ଜ୍ଞ ସୁଧା ଆନନ୍ଦ ଝର ଫିଟିଯାଏ ବଳେ
ଚିର ସ୍ନେହମୟୀ ମାତା ମଧୁର ଅନ୍ତରେ ।
ଉତ୍ତପ୍ତ ମିହିର କରେ ହିମାଚଳୁ ଯଥା
ଦୁର୍ବାର ସଲିଳଧାରା ସ୍ରବଇ ସର୍ବଥା—

ତେସନ ସନ୍ତାନ ଦୁଃଖେ ହେଲେ ମ୍ରିୟମାଣ
ଜନନୀ ନୟନୁ ଝରେ ଲୋତକ ଝରଣା ।
କି ଦୁଃଖ ଯାତନା ସହି ଗଢ଼ନ୍ତି ଜୀବନ
ଦିବସ ଯାମିନୀ ସୁଖେ, ଦୁଃଖେ ଅନୁକ୍ଷଣ ।

ପାଳନ୍ତି ଯେ ସ୍ନେହଭରେ ତାଙ୍କର ଶ୍ରୀପଦେ
ରହୁ ମୋର ମତି ସଦା ସଂପଦେ, ବିପଦେ ।



# ନିବେଦନ

ଭୋଗେ ଅହରହ ଦୁଃଖ ବିପଦ କଷଣ
ମୁଞ୍ଚୁ ସଦା ତପ୍ତ ଅଶ୍ରୁ ଏ ଦଗ୍ଧ ନୟନ ।
ନୁହେ ମୁଁ ବ୍ୟାକୁଳ ତହିଁ ହେ ଅନ୍ତରତର
ତୁମ୍ଭ ଇଚ୍ଛା ହେବ ଯଦି ଜୀବନେ ସଫଳ ।

ତବ ଦତ୍ତ ବିତ୍ତକର ଜୀବନ ସମ୍ବଳ
ଲଙ୍ଘିବି ଦୁସ୍ତର ଏହି ଭବ ପାରାବାର ।
ଆସୁ ଦୁଃଖ ଆସୁ ଚିନ୍ତା, ଆସୁ ସେ ବିପଦ
ଧରିବି ପୁଲକେ ମଣି ତୁମ୍ଭର ସଂପଦ ।

ଏ ମୋର କୈଶୋର କ୍ଷେତ୍ର ଜୀବନ ଜଗତେ
ବିସ୍ତୃତ ରହିଛି ଆଶା-ଲତା ବହୁ କେତେ ।
ପୂରାଅ ବାସନା ବିଭୋ ! ବରଷି କରୁଣା
କି ଅଛି ଭୁବନ ଖଣ୍ଡେ ତୁମ୍ଭର ଅଜଣା ।

ଅନନ୍ତ ମଙ୍ଗଳମୟ ଜଗତ ସମ୍ବଳ
ତୁମ୍ଭ ଆଶୀର୍ବାଦେ ଆଶା ହେଉ ମୋ ସଫଳ ।



୨

# ଶ୍ମଶାନ

ଧନୀର ବିଭବମାନ ବୀରର ପ୍ରତାପ
କୁଟୀର ସମ୍ବଳ ଦୁଃଖୀ ବିଷାଦ ବିଳାପ
ହୃଦୟର ସୁଖ ଦୁଃଖ ବିପଦ ନିଚୟ
ଲୁପ୍ତ ଏହିଠାରେ ଜଗତର ଅଭିନୟ ।

ବୈଧବ୍ୟ ବିଧୁରା ବାମା ବିଳାପ କାହାଣୀ
ସହମୃତା ରମଣୀର ଭକ୍ତିପୂତ ବାଣୀ
ପୁତ୍ର ଶୋକାତୁରା ନାରୀ କ୍ରନ୍ଦନର ରୋଳ
ଲୁପ୍ତ ଏହିଠାରେ ଜଗତର କୋଳାହଳ ।

ତୁଟିଯାଏ ଜୀବନର ଅନନ୍ତ ଆବେଗ
ଏହି ଭୂମି ଖଣ୍ଡେ, ଅହୋ ! ଜୀବନର ବେଗ ।
ଦେଖି ତ ଆସୁଛି ଏହୁ କେତେ କେତେ ଲୀଳା
କୋଳେ ବହି କେତେ ଭୂପ, କେତେ ବୀରବାଳା ।

ଆଜ ସେ ସୁତ୍ତରଦ୍ୱାର ଫିଟିଯାଏ ବଳେ
ଯଶପନ୍ଥୁ କାଳର ଏ ଅବିନାଶୀ କୋଳେ ।

ଖେଳାଇ ଆନନ୍ଦ ସ୍ରୋତେ ଜଳ, ସ୍ଥଳ, ବନ
ଉଇଁ ଆସୁଥିଲା ପୂର୍ବେ ତରୁଣ ତପନ
ଆହା ! ହା ! ପଲକେ ଗ୍ରାସ କଲା କ୍ରୂର ରାହୁ
ସତେ କି ଦେଖିବି ନେତ୍ରେ ସେ ମୂରତି ଆଉ ?

ହସାଇ ଜଗତ ଜନ ପିକ କଳସ୍ୱରେ
ହସି ଉଠୁଥିଲା ମଧୁ ପ୍ରସୂନ ହକାଶେ
ଗ୍ରାସି ଅର୍ଦ୍ଧପଥେ ଗ୍ରୀଷ୍ମ କ ସାଧିଲା ଦାଉ
ସତେ କ ଦେଖିବ ନେତ୍ରେ ସେ ମୂରତି ଆଉ ?

ହୃଦ-ଉପବନେ ଥିଲା କୁସୁମ ସୁନ୍ଦର
ସୁଗୁଣ ସୌରଭବନ୍ତ ଦିବ୍ୟ ଆନନ୍ଦର
ସହସା ଅନ୍ତର ହେଲା ସୌରଭ-ପ୍ରବାହୁ
ସତେ କ ଦେଖିବ ନେତ୍ରେ ସେ ମୂରତି ଆଉ ?

ଦୁର୍ଗମ ଜୀବନ ଘର୍ମ ପଥେ ଯାଉଁ ଯାଉଁ
ସତେ କ ଦେଖିବ ନେତ୍ରେ ସେ ମୂରତି ଆଉ ?

ଚଳଲେଣି ଦିନମଣି ବାରୁଣୀ ଗଗନେ
ଲୋହିତ ଜଳଦମାଳା ରୁଚିର ସ୍ୟନ୍ଦନେ ।
ଆବର ଆସୁଛି ନିଶା ଅବନୀ ହୃଦସ୍ଥ
ଦିଅନ୍ତୁ ବିଦାୟ ଭାଇ, ଦିଅନ୍ତୁ ବିଦାୟ ।

ଲୁଚିଲାଣି ଦିବସର ଦିବ୍ୟ ଅପଘନ
ଦିଶଇ ଗଗନ ଦେଶ କ୍ରମଶଃ ମଳିନ
ବିହଗ ମଧୁର ଗାନେ ହୃଦୟ ଅଥୟ
ଦିଅନ୍ତୁ ବିଦାୟ ଭାଇ, ଦିଅନ୍ତୁ ବିଦାୟ ।

ଶୁଭିଲଣି ଚକ୍ରବାକୀ ବିରହ-କ୍ରନ୍ଦନ
ଫେଡ଼ଣ ଅଶାନ୍ତ ସ୍ମୃତି ସହସ୍ର ତୋରଣ
ଧରିପାରୁନାହିଁ ଭାଇ ସେ ସ୍ମୃତି ହୃଦୟ
ଦିଅନ୍ତୁ ବିଦାୟ, ପିତ, ଦିଅନ୍ତୁ ବିଦାୟ ।



# ନିରାଶା ବାଣୀ

"ନିରାଶାର ବାଣୀ    ପଢ଼ି ଏ ମରମେ
ନିମେଷେ ଯାଆନ୍ତା ଫୁଟି
ମଣନ୍ତି ନିରାଶା—    ମଧୁ ଏ ଜଗତ
ଯାଆନ୍ତା ଏ ଶିକ୍ଷା ତୁଟି ।"

"ଏ ନିଜନ ବାସେ    ରୁକ୍ଷ ଗିରକଣ୍ଠେ
ତପତ ଲୋତକ ଢାଳ
କି ଲାଗି ନିରାଶା-    ସରଣୀ ଲୋଡ଼ି ହେ
ପଥିକ ପରାଣ ଭର ?

ପରାଣେ ପରାଣେ    ସୋହାଗ-ସଂପଦ
ବହଇ ଅନନ୍ତ ପ୍ରୀତି
ଉଦାସ-ବିହାରେ    ଦୂରେ ରହେ ତବ
କିପାଁ ହେ ନୟନ ଜ୍ୟୋତି ?

ଏ କନକ ଭୂଇଁ    ସରଗ-ସଂପଦ
ଉଛୁଳେ ପୁଲକେ ଧରା
ଅଳସେ ଗାଉଚ    କି ଲାଗି ଏ ଗୀତ ?
ସାଥୀ କେ ନାହାନ୍ତି ପରା ।"

ସାଥୀ କି କରିବେ    ଜୀବନେ ବାବୁ ହେ
ସାଥୀ ମୋ ସଙ୍ଗୀତ ଏଥି
ଆଖି ଫାଟି ଯାଏ    ଲୋତକ ଲହରେ
ଦୂର ପଥେ ସାଥୀ ଚିନ୍ତି ।

ଦୂର ପଥ ସେ ଯେ    ତିନକୋଶ ଏଠୁଁ—
ଦୂରେ ମୋ ଜୀର୍ଣ୍ଣ କୁଟୀର
ପ୍ରାଣର ସଂପଦ    ତିନୋଟି କଳିକା
ଛ'ନ୍ତି ସାଥୀ ହୃଦୟର ।

ହି, ହିନ ଆଜକ କୁଟୀର ଘୁଡ଼ିଚ
ଏ ଜାର୍ଣ୍ଣ ଝୁଲଟି ବନ୍ଧି
ସାତଖଣ୍ଡ ଗାଆଁ ବୁଲ ଆସିଲଣି
ଭିକ ମୁଠେ, ମୁଠେ, ପାଇଁ ।
ପେଟ ନ ପୂରିଲା ଏ କାନ୍ତାରକାଳେ
ଝୁଲି ମୋ ପଡ଼ିଚ ଖାଲି
ସତେ କି ଜୀବନେ ଥିବେ ମୋ ଆଉ ସେ
ଏ ହୃଦ-ସାଥି-ସଙ୍ଗୀନୀ ।
କେତେ ଯେ ଗ୍ରୀଷମ ହେଉଛି ନମ୍ଭନେ
ଗାଇଚ ସଙ୍ଗୀତ ଶତ
ସେ ସଙ୍ଗୀତେ ଆଜ ଢାଳିବାକୁ ମନ
ଆଉ ତ ନବଳେ ଚାଉ ।
ଲଭନ୍ତା ଯହି ମୋ କ୍ଷୀଣ ଆଶାରେଖା
ଦେଖନ୍ତି ନିରାଶା ଖାଲି
କି ଲଗି ଥାଆନ୍ତି ବାସନା-ଦୁଆରେ
ଆଉ ତା' ଅତିଥି ବୋଲି ।
ଫେରିବ ନାହିଁ ସେ କୁଟୀରେ, ନିରାଶେ
ଥାଆନ୍ତୁ ଧନ ମୋ ତହିଁ
ଏ ବନେ ତେଜିବ ଏ ଦୀନ ପରାଣ
ନିରାଶା ସଙ୍ଗୀତ ଗାଇ ।
ଛଳ ଛଳ ନେହେ ତେଜବେ ପରାଣ
ଧନ ମୋ ବିଜନ ବାସେ
ଭେଟିବେ ବୋଲି ସେ ଜନକେ ଦୋସର
ଶିଶୁ ହୃଦେ ଆନ ଦେଶେ
ଯାଅ ସମୀରଣ ଯାଅ ହେ ପଥିକ
ଯାଅ ବିହଙ୍ଗମ ଦୂରେ
ନିରାଶେ ପଥିକ ଏ ବନେ ଗାଇବ
ନିରାଶା ସଙ୍ଗୀତ ବାରେ ।

# ସ୍ତବ

କରୁଣା-ସରିତପତି ହେ ଅମୃତମୟ
ବୁଝିପାରୁନାହିଁ ତବ କରଣୀ-ନିଚୟ
ଜୀବନ-ଜାହ୍ନବୀ ଧରି ବ୍ରହ୍ମାଣ୍ଡ ଗରଭେ
ପଲବେ ସଞ୍ଚରି ଖେଳେ ନିଦିବ ବିଭବେ ।

ଅମୃତର ଦିବ୍ୟ ଜ୍ୟୋତି ଅନ୍ତରେ ଅନ୍ତରେ
ବିଳସେ ଜୀବନପଥେ କି ଉଲ୍ଲାସ ଭରେ ।
ଗୁରୁ ଶିଷ୍ୟ, ପତି ପତ୍ନୀ ହୃଦୟ ଆଗାରେ
ବିଳସେ କି ଭକ୍ତି ପ୍ରୀତି ମହା ମହିମାରେ ।

ଜନକ, ଜନନୀ, ସୁତ, ଭଗିନୀ ସୋଦର
ତବ ପ୍ରେମେ ବନ୍ଧା ଭବେ ହୃଦେ ହୃଦୟର ।
ତବ ସେହି ଦିବ୍ୟ-ଜ୍ୟୋତି ପୀୟୂଷ-ସନ୍ନିତ
ପାପାନ୍ଧ ମାନବ ପଥ କରେ ଆଲୋକିତ ।

ନିଖିଳ ବ୍ରହ୍ମାଣ୍ଡ ଗାଏ ତବ ମହିମାର
ଲଳିତ ମଧୁର ମନ୍ଦ୍ର ଗୀତି ଅନିବାର ।

# ବର୍ଷା

ଆଜ ଏ ଅଦିନେ ଆଜ ଦୁର୍ଦ୍ଦିନେ
କାହାର ଝରେ ଏ ଲୁହ,
କାହାର କୁଞ୍ଜ ଶିଥିଳ କୁସୁମ
ଫିଟି ପଡ଼େ ନବବଧୂ ପ୍ରୀତି ସମ,
କାହା ଖେଳା ଅଚଞ୍ଚଳ ଲାସ୍ୟ
ଝରି ଆସେ ଅହରହ,
କଏ ପାର କଏ କହ ।

ନବ ଘାସରେ ଘାସରେ ଶ୍ୟାମଳିମା ଝରେ
କାହାର ଫୁଲ୍ଲ ହାସେ
ଫୁଟେ, ଜାଇ, ଜୁଇ, ମାଳତୀ ମୁକୁଳ
ଉପବନ ବାଳା ଶୁଭ୍ର ଦୁକୂଳ
ଫୁଟେ ଗୋ ଚମ୍ପା ଫୁଟେ କଦମ୍ବ
କାହାର ପରଶ ଭରେ
କହ କଏ ଅଛୁ ଦୂରେ ।

ବରଷା ଗୋ ମୋରେ ସରସ କର ଗୋ
ନବ ଘାସ ତରୁ ସମ
ଝର ଝର ଝର ପତର ଗହନେ
ବରଷା ରାଣୀର ମରମ ଚରଣେ
କୋରକ ମୁକୁଳ ହୁଏ ମୁକୁଳିତ
ମୁକୁଳାଅ ମୋର ମନ
ଆଜ ଏ ବରଷା ଦିନ ।



# କାହିଁ ସେ

ସଜନ ନଗରେ ଅବା ବିଜନ କାନନେ
ଦୂର ଶ୍ୟାମ ସିନ୍ଧୁ କୋଳେ କିବା ନୀଳ ଘନେ
ଧରା ରାଣୀ ଶିର ତୁଙ୍ଗ ଭୂଧର ଶିଖରେ
କି ଅବା ତପନ-ତପ୍ତ ସୈକତ ପ୍ରାନ୍ତରେ

ନୀରବ ପରାଣେ କେତେ ଅଶ୍ରୁ ଜଳେ ଭାସି
ବହୁ ଦିନ ପ୍ରାଣେ ତାକୁ ଖୋଜିଲିଣି ଆସି
ନ ଦେଖିଣ କ୍ଷଣେ ହାୟ ! ହୃଦୟ ବିକଳ
ନୟନର ତାରା ସେ ମୋ ଜୀବନ-ସୋଦର ।

ଥିଲି ଯେତେ ଦିନ ଥିଲି ଆନନ୍ଦେ ତା ପାଶେ
ଏବେ ତ ଯାଇଛି ଚାଲି ବନ୍ଧୁ ଦୂର ଦେଶେ
ବିଧିରେ ! ଶୈଶବେ ମୋର ନୟନର ତାରା
ବାଲ୍ୟ ଥିଲୁ ଜୀବନର ଆନନ୍ଦପସରା

କିଶୋର ଜୀବନେ କାହିଁ ଗଲୁ ତୁ ଏକାକୀ
ବ୍ୟାକୁଳେ ଖୋଜଇ ବୁଲି ଦୁଃଖେ ଡାକି ଡାକି ।



# ବୋହୂ

ଅନ୍ଧାର ମେଘ ତେଣୁ ଆସଇ କାହ୍ନୁ
ପାଣିକି ଗରା ଧରି ଯାଏ କା ବୋହୂ
ପବନ ମାରେ ଆଗୁ ପଣତ ଫେଲି
ମୁକୁଳା କେଶପାଶ ଉଠାଇ ଖେଳି ।

ସେ ପାଖ ଚୋଟାମାନେ କୁହାଟ ମାରେ
ଗଉଡ ଗାଈ ଗୋଟେ ଲଉଡ଼ି କରେ
ଚମକି ଗୁହେଁ, ତେଣେ ବିଜୁଳି ହସେ
ନବଢ଼ି ବୁକେ ତାର ଛନକା ପଶେ ।

ଚରଣ ଗୁଳେ ବେଗେ ଫେରିବ ବୋଲି
ପଣତ ଦେଲେ ଯେତେ ପଡ଼ଇ ଖୋଲି
କରେ ତା ଗରା, କରେ ଧରାଇ କାନି
ଟପରି ଟପ ପଡ଼େ ବରଷା ପାଣି ।

ସେ ପଟେ କଆବଣ, ଏ ପଟେ ବିଲ
ମଝିରେ ଗୁଲେ କଏ ନୂଆଁଇ ଶିର
କଳସୀଭରା ପାଣି ଚହଲି ପଡ଼େ
ତନୁରେ ଓଦାଲୁଗା ଜଡ଼ଇ ଜଳେ ।

ଅଦିନ ମେଘ ଦିଶେ ନିବିଡ଼ କଳା
ନିବିଡ଼ ହୃଦ ତାର ବାସନାଭରା ।
ଦୂରେ ତା ପରବାସ ପରାଣସଖା
ସ୍ମୃତିରେ ଦିଏ କାଟି ବିଜୁଳିରେଖା ।

ହୋଇଲେ ଜମା ତାର ଗୁଡ଼ିରେ ମେଘ
ନୟନୁ ଝରେ ପାଣି ହୃଦୟାବେଗ
ଏ କାଳେ ପ୍ରାଣସଖା ରହିଲେ କାହିଁ
କହିବ ମେଘ ପରା ବାରତାବାହୀ ।



# ଆହ୍ୱାନ

ଅଶିଣ-ଉଷାର କନକ-ଲହରେ ପୁଲକେ ଘସେ
ନବୀନ-ଭରତ ପ୍ରଥମ-ଛନ୍ଦ ମାଳ ନଭସେ ।
ଗୃହିଁଥିଲି ଶିଶୁ ଆକୁଳ ଚକ୍ଷେ ଲୋତକ ଭରି
କେଉଁ ଧରଣୀର ମାଳଞ୍ଚ କୁଞ୍ଜୁ କି ତାନ ବରି ।
(ତାର) କୁଟୀର-ଦୁଆରେ ଶୁଭିଲି କାହାର ମଧୁ-ରାଗିଣୀ
ଅଚହ୍ନା-ଅଳସେ ପୁଚ୍ଛିଲି "କଏ ସେ ?" ଶୁଣିଲିବାଣୀ—
(ତୋର) "ପରାଣସାଥୀ ମୁଁ ଜୀବନ ସୋଦର ବୁଝି ବୁ କି ତୁ ?
ତରତର ବେଶେ ଦୁଆରେ ଆସିଚ ସୁଦୂର ପଥୁ" ।

ଫଗୁଣ-ଗହନେ ଝରଝର ବହେ ଝରଣା ଧାରେ
ପାଷାଣ-ତଳପେ କରୁଡ଼ି ଲହରୀ ତଟ-ଶଇଳେ ।
ହୃଦୟ ପ୍ରହାରେ ବସିଥିଲି କାହୁଁ ତରୁଣ ତନ୍ୱୀ
ତରଳ ବିଳାସେ ଥରେ ଥରେ ଆଶା ସଙ୍ଗୀତ ଗାଇ ।
(ତାର) ଶ୍ରବଣେ ବାଜିଲି ସମୀର-ଛନ୍ଦେ କା' ଗୁରୁ ଗାନ
ଚକିତେ ପୁଚ୍ଛିଲି ଆକୁଳକଣ୍ଠେ, ଆସିଲି ତାନ ।
(ତୋର) ହୃଦୟ ଦେବତା, ପରାଣ ସମ୍ପଦ, ଆସ ମୋ ପାଶେ
ଆଶା କୁଞ୍ଜେ ବୁଲି ମୋ ସାଥେ ଲଭିବୁ ମୁକତି ଶେଷେ ।

ଆଷାଢ଼ ଆସାର ଗୁରୁ ଗରଜନେ ଧରଣୀ କାନ୍ଦେ
ଫାଟିଯାଏ ନଭ ଅନନ୍ତ ଜଳଦ କୁଳିଶ ମନ୍ଦ୍ରେ
ଲୋଳିତ ଲୋଚନ ଶବଳିତ କେଶେ ଗୃହିଁଛି ବୃଦ୍ଧ
କାତର କଣ୍ଠେ ପିଚ୍ଛୁନାହିଁ ତେବେ ଅଶାନ୍ତ ହୃଦ ।

ଖ୍ୟାମ ଗରଜନେ ଉଠିଲା ଛନ୍ଦ ମୁଖର ବିଶ୍ୱ
ଭାଙ୍ଗିଲା ସ୍ୱପ୍ନ ଦେଖିଲା ବୃଦ୍ଧ ବାସନା ଭସ୍ମ ।
ଶୈଶବ ଗାନ ଆସିଲା ବାହୁଡ଼ି ଏବେ ତା ହୃଦେ
ନିର୍ଝର-ଗୀତି ଛୁଇଁଲା ପରାଣ ସମୀର ଛନ୍ଦେ ।

(କାର) ଆହ୍ୱାନ ଭାସି ଗଗନ ବିତାନେ ମଧୁର ତାନେ
ପରଶିଲା ତାର ଶୂନ୍ୟ-ହୃଦୟ, ଶୂନ୍ୟ-ପୁରେ—
"ଜୀବନବ୍ୟାପୀ ଆହ୍ୱାନ ନର ! ଥିଲୁ କି ବଧିର ?
ଧ୍ୱାନ୍ତ ହୃଦୟେ ତୋଳୁଥିଲୁ ବସି ଆକାଶ ଫୁଲ ?"

ଧ୍ୱାନ୍ତ ଜଗତେ ଆଲୋକ ଜଳିଲା, କୁଟୀର କୋଣେ,
ବାଜିଲା ଶୂନ୍ୟ—ବିପଞ୍ଚୀ କା'ର ମୁକ୍ତ ତାନେ—
"ବାରେକ ଆତୁର ଆହ୍ୱାନ ଆସୁ ଶୁଣେ ମୁଁ ବାରେ
ଶାନ୍ତ ଧରଣୀ ମୁକ୍ତ-ଉରସେ, କୁଟୀର ଦ୍ୱାରେ" ।



# ଏକାକିନୀ

"ପ୍ରଦୋଷ ଅରୁଣ          କନକ ସୋହାଗେ
ଝଳେ ବନଗିରି, ସର, ସରିତ
ଏକାକିନୀ ଏ ଯେ          କି ଲାଗି ଅବନେ !
ଦୁଃଖଭରା ତବ ସରଳ ଚିତ୍ତ ।

ନିଗାଡ଼ି ନୟନୁ          ଏ ଲୋତକ ଧାରା
ଝିଙ୍ଗାସି ବଚନ ନ କହ କାରେ
ପ୍ରବାଳ-କପୋଳେ          ନିରାଶାର ସ୍ମୃତି
ଖେଳିଯାଏ କି'ବା କୁଟିଳ-ଗାରେ ।"

"ପଥିକ ଜୀବନେ          କି ସମ୍ପଦ ବନ୍ଧୁ
ବୁଲୁଛ ବାପ ହେ ତରୁ ଗହନେ
କମନ୍ତୁ କୋମଳ          ଏ ମଧୁ ପବନେ
ଭାଗୀ କିମ୍ପା ହେବ ଏ ଦୁଃଖଭାରେ ।

କହ ଯେବେ ବାବୁ !          ଗାଇବି ନିମିଷେ
ଦୁଃଖିନୀ ହୃଦୟ କ୍ଷୀଣ-କାହାଣୀ
ମୋ ଦୁଃଖେ ଯଦି ବା          ତମ ହୃଦ କାନ୍ଦେ,
ଲଭ ଯଦି ସୁଖ ଶୁଣି ମୋ ବାଣୀ ।

ବରଷୁ ଅଧିକ          ହେବ, ଏହି ବନେ
ଏହି ତରୁମୂଳେ, ଏହି ପ୍ରଦୋଷେ
ଜୀବନର ସ୍ମୃତି          ଧମନୀ-ଶୋଣିତେ
ଜଡ଼ିତ ଏହି ମୋ କରୁଣ ଭାଷେ ।

ଜୀବନ ସଂଖାଳ ଗଳାର ମାଳ ମୋ'
ଏହି ତରୁମୂଳେ ଯାଇଛି ଲୁଚି
ଶତ ଶୀତ ଖରା ପରଶିଲାଣି, ଏ—
ଘରେ ଧନ ନାହିଁ ପଦାଣ୍ଠ ଅଛି ।

ମନେ ଅଛି ଯେବେ ଘେନ ଫୁଲ ଡାଲା
ଚଞ୍ଚଳ-ଚଳନେ ତୋଳଇ ଫୁଲ
ଦେଖନ୍ତି ସରସୀ ଶାରଦ-ଲହରେ
ସେ ମଧୁ ବହାରେ ହେବାକୁ ଭୁଲ ।

ହବା ଶେଷେ ହନେ ଶଂକତ-ମରମେ
ସଂଖାଳ-ଆକୁଳେ ଦେଖିଲ ଏଠି
ଯେ ଛବି, ଆଜ ଏ ନୀରସ ପରାଣୁ
ଭାଷା ସଙ୍ଗେ ଚେତା ଯାଉଚ ତୁଟି

ରକତ-ଆଶାରେ ଡନ୍ତାଇ ଏ ଭୂଇଁ
ଲେଟେ ଶିରଟି ତା' ଧୂଳ ଆଦର
ନଠୁର କରମେ ଝୁର କେବା ଦସ୍ୟୁ
ଘେନଛି ପରାଣ ସମ୍ପଦେ ଭୂଲ ।

ଏହି ଗର୍ଭେ ଧର ଦଶ ମାସ, ଆହା !
ପାଳଥିଲ ବାବୁ ! ଏ କରେ, କୋଳେ,
ଆହା ଏହି କରେ ଶୋଣିତ ବୋଳା ସେ
ଛିନ୍ନ-ଶିରଟି ତା' ଧଇଲ ବାରେ ।

ଆକୁଳେ ଡାକଲ ଅନନ୍ତ ଗଗନେ
ତଳେ ନ ପୂରିଲା ଦୁଃଖିନୀ ଆଶା
ଏହି ବନଗିର ପ୍ରତନାଦ ଛଳେ
ଫେରାଇଦେଲେ ମୋ ସକଳ ଭାଷା ।

ବାପା ହେ ! ଏ କରେ ସଜାଡ଼ିଲ ଚିତା
ଜାଳି ଦେବାପାଇଁ ଧନ ବଦନ
ନିମିଷେ ହେଲ ସେ ପାଉଁଶ ମୁଠିଏ
ପାଷାଣୁ କଠିନ ହେଲ ଏ ପ୍ରାଣ ।

ସେହ୍ନିଦନୁ ରତି ଏ ମୂଳେ ଏ ବେଦ୍ଧି
ହବା ନଶି ଥାଏ ଏକାଟି ଏଥି
ନ ଲୋଡ଼େ ପରାଣ ଧନ ବନା ଆଉ
ଏ ମର ସଂସାରେ ଆନ କେ ସାଥୀ ।

ଛଳ ଛଳ ହେଲ ଏ ନୟନ ଯୁଗ
ପ୍ରଦୋଷ ଗଗନେ ଗୃହିଁଲ ବାରେ
ଆକୁଳେ ହଂପଦ ଭାଷି ବାହୁଡ଼ିଲ
ଆନ-ଦନ-ଦେଖା-ବାସନା ଭୁଲେ ।

ଘୁଇଲ ତିମିର ଅନନ୍ତ ଧରଣୀ
ସେ ବନେ ଅବଳା ରହିଲେ ଏକା
ସେ ପଥେ ଫେରିଲ ଏକାକୀ କୁଟୀରେ
ପୋଷି ପ୍ରାଣେ କେତେ ଆକୁଳ-ଶଙ୍କା ।



# ଆଦ୍ୟ ଅବକାଶେ

ନିକୁଞ୍ଜ ମଣ୍ଡପତଳେ ପ୍ରେମରଙ୍ଗେ ନାଚି
ଲଭେ ଦରହସା ପୁଷ୍ପ ନିସର୍ଗ ପୀରତି ।
ମଧୁପ ମୋହନ ଗୀତି ପ୍ରେମ କୁତୂହଳେ
ଶୁଣେ ଗୋ ସୁନ୍ଦର ! ତହିଁ ସନ୍ତତ ନିରେଳେ ।

ସେ ଦେଶ କୁସୁମ ନୁହେ ଏ କୁସୁମ ପରି
ସେ ବିହଗ ଗାନେ ଭରା ସରଗ ମାଧୁରୀ ।
ସେ ଦେଶ ପ୍ରଭାତ ସନ୍ଧ୍ୟା ଗଗନ-ସମୀର
ମଧୁମୟ, ପୁଣ୍ୟମୟ ସେ ଦେଶେ ସକଳ । ୧ ।

ବହୁ ଦିନ ଅବକାଶେ ପଡ଼ୁଅଛି ମନେ
ଭାସୁଛି ମୋ କେତେ ଛବି ମାନସ ଗଗନେ ।
ଆକୁଳ ମଉନେ କେତେ ମରମ ବାସନା
ଫୁଟି ଆସେ ସୁନ୍ଦର ଗୋ ଭେଦି କଳପନା ।

ଭାବିଥିଲି ବିରଚି ମୁଁ ସେ ଦେଶେ କୁଟୀର
ବରଷା ନିଦାଘେ ତହିଁ ପାତିବି ଏ ଶିର ।
ଯେତେ ନିନ୍ଦା ଅପମାନ ସହି ମର ପ୍ରାଣେ
ସଜାଡ଼ି ରଖିବି ପ୍ରୀତି ଆନନ୍ଦେ ଯତନେ । ୨ ।

ଯେ ଦିନୁ ଛାଡ଼ିଚୁ ଦେଶ ହୋଇ ମୁଁ ଅତିଥି
ଜାଣିଚୁ ସେଦିନୁଁ ଦୁଃଖ ପ୍ରାଣ ଚିର ସାଥୀ
ସେଦିନ ସ୍ମୃତିଟି ପ୍ରାଣେ ଖେଳୁଛି ଗୋ ଆଜ
କୋଳେ ବାନ୍ଧି କେତେ ସୁଖ ଦୁଃଖ ଚିନ୍ତାରାଜ ।

ଭେଟିଥିଲି ତୋ ନିମିଷେ ସେ ଦେଶ ବିଭବେ
ତଟିନୀ ସରସୀ ବନ ନିକୁଞ୍ଜ ଗରବେ
କୁସୁମ କୁସୁମେ ହାସ ବାନ୍ଧି ଏ ପରାଣେ
ଭୋଗିଥିଲି ପୁଣ୍ୟ ପ୍ରୀତି ଏ ମଧୁ ଜୀବନେ । ୩ ।

ତରଳ ଆନନ୍ଦେ ଗୃଳ ଯୁଗଳ ପଦ୍ମରେ
ସରଳ ବିହାରେ ଆସୁଥିଲି ଗୋ ସରଳେ
ଭେଟିଲି ସରଣୀ ପ୍ରାନ୍ତେ କନକ ପ୍ରତିମା
ସେହି ତୁମ୍ଭେ ଏ ପରାଣ ପ୍ରୀତି ମଧୁରିମା ।

ଲୋଡ଼ି ତ ନଥିଲି କ୍ଷଣେ ଆସିବାକୁ ପାଶେ
କିପାଇଁ ଗୋ ଆସ ଆଜ ଏ ଦୂର ପ୍ରବାସେ ।
ଦିନେ ହେଲେ ସ୍ୱପନରେ ନଥିଲି ତ ଚିନ୍ତି
କିପାଇଁ ହୋଇଛୁ ଆଜ ପରାଣ ଅତିଥି । ୪ ।

ବାଧା ବିଘ୍ନ ବିପଦର ଭୀଷଣ ତାଡ଼ନେ
କର୍ମେରତ ବିଶ୍ୱବାସୀ ଏ କର୍ମ ଅଙ୍ଗନେ ।
ଏ ମୋ କ୍ଷୁଦ୍ର ହୃଦୟର କ୍ଷୁଦ୍ର ଆଶା ଧରି
ଏକାକୀ ଯାଉଛି ତହିଁ କର୍ମ ଅନୁସରି ।

ସଖା କେ ନାହାନ୍ତି ପ୍ରାଣ ଆଶ୍ୱାସନେ ପାଶେ
ନିଜେ ଧାଇଁ ଅଛି, ନିଜ ବିଭବ ସକାଶେ
ହୃଦୟ ତୋରଣେ ବସି ବିଦ୍ୟୁ ମୃଦୁହାସେ
ଡାକ କି କାରଣେ ସତ ସନ୍ତତ ଉଲ୍ଲାସେ । ୫ ।

ମଣଇ ଜୀବନ ଏବେ ମହାଗୁରୁ ଭାର
ବର୍ଣ୍ଣିବାର ଶକ୍ତି ନାହିଁ ଏ ମୋର ଭାଷାର
କି ଅବା ଫଳିବ ଫଳୁ ଦୂର ଭବିଷ୍ୟତେ
ଆସିଛି ତ ଧରିବ ଏ ଜୀବନ ଉଷତେ ।

ଏତିକି ମାଗୁଣି ପଦେ ଦେନଯାଅ ସଖୀ
କୁସୁମ ଦର୍ଶନେ ଯେବେ ହସନ୍ତ ବ୍ରତତୀ
ସେ ନିସର୍ଗ ଉଷା ଏବେ ଜୀବନେ ବିଳସେ
ମିଳାଇବ ଅଙ୍ଗ ହଟନେ ପରାଣ ପ୍ରଦୋଷେ । ୭ ।

# ଗାଅନା ଗାଅନା ଜ୍ଞାଇ ମରମ କାହ୍ଣୀ

ଗାଅନା ଗାଅନା ଜ୍ଞାଇ ମରମ କାହ୍ଣୀ
ଅଧର କମ୍ପନୁଁ ଆଗୁଁ ପାରୁଛି ମୁଁ ଜାଣି
ସରଳ ହୃଦୟୁ ଯେତେ ଜ୍ଞାବଭଙ୍ଗୀ ଖେଳେ
ଜ୍ଞସିଯାଏ ଜ୍ଞବା ନେତ୍ରେ କୋମଳ-କପୋଳେ ।
ଦୁଃଖ ଦୁଃଖମୟୁ ପ୍ରାଣ କି ଜ୍ଞଷିବ ବାଣ
ଗାଅନା ଗାଅନା ଜ୍ଞାଇ ମରମ କାହ୍ଣୀ ।

କାନନ ଗ୍ରାଇଜେ ତରୁ କୁଞ୍ଜତଳେ ବସି
ଦେଖଇ ନୟନ ଭରି ନିତ୍ୟ ରବି ଶଶୀ ।
କୁସୁମ-ମଧୁପ ପ୍ରେମେ ଦେଉଛି ମିଳାଇ
ଜ୍ଞାବନ ମରମ ଗୀତି ପରବାସେ ଥାଇ ।
ପରତେ ନଥିଲ୍ ବନ୍ଧୁ ଏ· ଶୁଭ ନିମିଷେ
ବଖାଣିବ ବୋଲି ମନ କଥା ତବ ପାଶେ ।
ପର୍ବଣେ ଉଠଇ ଶୋକ-ସରିତ ଉଜାଣି
ଗାଅନା ଗାଅନା ଜ୍ଞାଇ ମରମ କାହ୍ଣୀ ।

ତିମିର ତରଙ୍ଗ ଯେବେ ଯାମିନୀ ସାଗରେ
ଖେଳ ଆସେ ଗିରିଚୂଡ଼ା ଡେଇଁ, ଧର୍ବାତଳେ ।
ଏକାକୀ କୁଟୀରେ ବସି କଳପଇ ମନେ
ସ୍ନେହ ଜରଜର ତବ ସରଳ ବଦନେ ।

କି ବିଭବ ହୃଦେ ସେ ଯେ ନ ପାରଇ ଜାଣି
ଗାଅନା ଗାଅନା ଭାଇ ମରମ କାହାଣୀ ।

ସ୍ୱର୍ଣ୍ଣ-ଭବିଷ୍ୟତ ମୋର ହେବ ଛାରଖାର
ଲୁଚିଯିବ ଯେତେ ସ୍ମୃତି ପୁଣ୍ୟ ଅତୀତର ।
ନିରାଶ ମରୁରେ ହୃଦ ହୋଇଯିବ ହାଣି
ଗାଅନା ଗାଅନା ଭାଇ ମରମ କାହାଣୀ ।

ଯୁଗଳ ନୟନେ ତବ କେତେ ରଙ୍ଗେ ଭାସେ
ଗୋଟି ଗୋଟି ଅଶ୍ରୁ ବିନ୍ଦୁ ନୀରବ ଉଦାସେ ।
ହୃଦୟର ଧନ ସେ ତ ଜୀବନ ସମ୍ବଳ
ନିରାଶ ପରାଣେ ଢାଳେ ଆଶା ଅବିରଳ ।
ଦେଇ ଯାଆ ଭାଇ ଚକ୍ଷୁ ଦୁଇ ବିନ୍ଦୁ ବାରି
ସୋଦର 'ବିଦାୟେ ଏ ମୋ ଚରଣେ ଗୁହାରି ।

# ଅଶ୍ରୁକଣା

କେଉଁ ଦୂର ଅତୀତର ସ୍ମୃତି ସ୍ରୋତେ ଆସି
ଏ ଯେଉଁ ଲୋତକକଣା ନେତ୍ରେ ଯାଏ ଭାସି
ସରଗର ଧାର୍ ସେ ଯେ ଅନ୍ତରେ ଅନ୍ତରେ
ନୀରବ ସରଳେ ଭାସିଯାଏ ମର୍ମ ତଳେ ।

ସେ ଯେଉଁ ଲୋତକକଣା ଭାସିଯାଏ ପ୍ରାଣେ
ଉଦାର ବିଭବେ ଭାବ ଅନନ୍ତ ବିତାନେ
ନୁହେଁ ସେ କଣିକା ଆହା ! କଣିକା ମାତର
ସେ ଗର୍ଭେ ନିହିତ କେତେ ଧାମ-ପାରାବାର ।

କେତେ ଦୁଃଖ ବିପଦର ଉତ୍ତୁଙ୍ଗ 'ଶଇଳ'
ସୁଖ ସଂପଦର କେତେ ଉଚ୍ଛଳ କଲ୍ଲୋଳ
କାହିଁ ଦୂର ଚକ୍ରବାଳେ କେତେ ଆଶା-ତରୀ
ଭାସି ଆସୁଥାଏ କେତେ ଭବିଷ୍ୟତ ଧରି ।

ବିନ୍ଦୁ ଗର୍ଭେ ସିନ୍ଧୁ ! ଅହୋ ! କି କଳିବ ଚିତ୍ତ
ଉଠୁଥାନ୍ତି ଦୂରେ ଯେଉଁ ନୀରବ ସଂଗୀତ ।

# ଭିକାରୁଣୀ

ବଦନ ତଟରେ ହସ ତାର ନାହିଁ
 ଲଜ ସରମର ବାହାରେ
ବସନ ମୁକୁଳା, କର ପାତି ଠିଆ
 ଭିକ୍ଷା ମାଗୁଚି, ଦ୍ୱାହାରେ ।
ଲୋଚନ ଉହ୍ନିଚି ଦଉ ମୁକୁଳିତ
 ନିଦ୍ରା କରିନା ପରଶ
ଶିଥିଳିତ ଗତି, ବୁଲେ ଦ୍ୱାର ଦ୍ୱାର
 ଷୋଳ କି ସତର ବରଷ ।

କେବେ ଥିଲା ହସି ବରଷକ ତଳେ
 କେବେ ଉଚ୍ଛି ଥିଲା ସରମେ,
ଆଶାର କୁସୁମ ଫୁଟିଥିଲା ଅବା
 କେବେ ତାର ଏଇ ମରମେ ।
ସଙ୍କୋଚେ କେବେ ଚାଲିଥିଲା ପାଦ
 ଗଲାବେଳେ ଚୋଟେ ପାଣିକି
ଆଜ ତା ସପନ, ବିକଳ ଜୀବନ
 ନେଇ ବୁଲେ ଯିବ କେଣିକି ?



# ବିଚ୍ଛେଦ

ତେଜି ତ ଦେଇଛୁ, ପାଶୁଁ ଯାଇଛୁ ସେ ଚାଲି
କି ଲାଭ ତହିଁ ଆଉ ବୃଥା ଅଶ୍ରୁ ଢାଳି ।
ଅନ୍ତରୁଁ ଦେଇଛୁ ସେ ତ ଅନ୍ତିମ ବିଦାୟ
ମୋ ଲଗି କି ହେବ ଆଉ ବିଷାଦେ ଅଥୟ

ତଥାପି ନ ଜାଣେ ମୁହିଁ କରଇ କି ଚିନ୍ତା
ନୀରବେ ବସିଣ କେତେ ପୁଚ୍ଛଇ ବାରତା ।
ନ ବାହାରୁ ମୁଖୁଁ ବାଣୀ ପଡ଼ଇ ଚମକି
ଭାବଇ ଅନ୍ତରେ ବସି ବନ୍ଧୁ ଭାଷିଲେ କି ?

ଚମକି ଦେଖଇ ପୁଣି ନୀରବ ଜଗତ
ନୀରବ ଗଗନ ଦେଶ ସରସୀ ସରିତ ।
ଶୂନ୍ୟଦେଶେ ଶୂନ୍ୟପ୍ରାଣେ ଭ୍ରମଇ ମୁଁ ଏକା
ନୀରବେ ଗାଇଣ କେତେ ଜୀବନ୍ତ ଦାୟିକା

ଏତିକି ମାତର ପ୍ରାଣୁ ପ୍ରଶ୍ନ ଜାଗି ଆସେ
"ମୋତେ ଛାଡ଼ି ମୋର ବନ୍ଧୁ ଗଲେ କେଉଁ ଦେଶେ ?"



# କପୋତ

ଆଜ ଏ କାନ୍ତାରେ କି ଗୀତ ବସି,
ଗାଅରେ କପୋତ ମନ ନିବେଶି
ଏ ନିର୍ଜନ ସ୍ଥଳୀ, ଦେଉଛୁ କି ଢାଳି
ପ୍ରାଣେ ଉପଲବ୍ଧି ଅମିୟ ରାଶି ।

ଗ୍ରୀଷମ ସମୟ ବଡ଼ ଦାରୁଣ
ସେ ବିଷୟେ ତୋତେ ନାହିଁ ବାରଣ
କିପ୍ରାଣ ଉଲ୍ଲାସେ ଏ ତପନ ତ୍ରାସେ
ଆନନ୍ଦେ ନିବେଶ ତୋ ପଞ୍ଚପ୍ରାଣ !

ଲଭି ତୁ ଏ ଘୋର ଯାତନା କ୍ଳେଶ
ଦେଖିଛୁ ନୋହୁ ତୁ ଲେଶେ ବିରସ
କି ପ୍ରେମ ସୁଧାରେ ଆଜ ବସୁଧାରେ
ଉଚ୍ଛୁଳାଉ ଭାବ ଧ୍ୟାୟି ମହେଶ ।

କି ପ୍ରାଣ ଉଲ୍ଲାସେ ସୁମନେ ଧ୍ୟାୟି
ମହେଶ ଶ୍ରୀପଦେ କି ଗୀତ ଗାଇ
ମଣିବା ସଙ୍କଟ ଭବ ଘୋର ହାଟ
ତରିବାକୁ ବାଇ ହୋଇଛୁଁ ତୁହି ?

ନାହିଁ କେହି ଏଥି ତୋ ବନ୍ଧୁ ଗଣ
ଏକାକୀ ତୁ କା'କୁ କରୁ ଭଜନ
କେତେ ନବ ଭାବ ଉଚ୍ଛୁଳି ପଡ଼ୁଛି
ତୋର ପୂତ ସ୍ୱନୁ ଉଠି ସଘନ ।

ସେ ଭାବ ଧାରଣେ ନୁହେ ମୁଁ ଯୋଗ୍ୟ
ଏ ସଂସାର ଭୋଗ, ନୁହେ ମୋ ଭୋଗ୍ୟ
ଦଣ୍ଡକ ସକାଶେ ସିନା ମୁ ଏ ଭବେ
ତୋ ପୂତ ପ୍ରେମରେ ହେଲି ଆରୋଗ୍ୟ ।

କରୁଛୁ କାହାକୁ କାତରେ ନତି
ଶିଖାଅ ମୋତେ ତୁ କରେ ମିନତି
ଏ ଦୁଃଖ ସଂସାର ଘୋର ଭୟଙ୍କର
ମଣେ ମୁଁ ଏସବୁ ସଦା ଅଗତି ।

ପ୍ରଭୁ ମହେଶ୍ୱର ପୂଜା ବିଧାନ
ସେ ପଦାରବିନ୍ଦେ ନ ଜାଣେ ଧ୍ୟାନ
ଏ ସନ୍ତପ୍ତ ପ୍ରାଣ ଉଦ୍ଧାର କାରଣ
ବତାଅ କପୋତ ପୁଣ୍ୟ ନିଦାନ ।

ଅନନ୍ତ ପ୍ରେମରେ ଯାଉ ଏ ଭାସି
ଯାଉ ମୋର ମନ ତା ସଙ୍ଗେ ମିଶି
ପ୍ରେମ ଆଲିଙ୍ଗନେ ବିଶ୍ୱଜନ ପ୍ରାଣେ
ଅନୁଭବ ପ୍ରାଣ ଯାଉରେ ହସି ।

# ତନୁ ଓ ତରୁଣୀ

ହସିଦେଲେ ତୁମେ ସୁନ୍ଦରୀ ଗୋ !
ଗାଲେ ଫୁଟି ଖେଳେ ବଙ୍କା ଦାଗ
ଭାଷିଲେ ପଦଏ ଅଧର ତଳେ
ଉକୁଟି ଉଠଇ କି ଅନୁରାଗ ?

ମୁଁ ଯେବେ କହଇ ତୁମେତ ମୋର
ଶତ ସପନର ଜୀବନ ଧନ
ଖାଲି ମିଛ ଖାଲି ଛଳନା ସହି
ଏ ମୋର କଥାରେ ନ ଦିଅ ମନ ।

ସତ କଥା କହେ, ଚାହିଁଲେ ତୁମେ
ଚାହାଣି ତଳେ ମୁଁ ବିଜୁଳି ଦେଖେ
ଭ୍ରୂଲତା ଚଳନେ ଭୁଲେ ମୋ ମନ
ତାହାର ଛନ୍ଦେ ମୁଁ କବିତା ଲେଖେ ।

ଏଇ ଯେ କନକ କର କମଳ,
ମୃଦୁ ଚିକ୍କଣ ପୃଥୁଳ ବାହୁ
ବାହୁଲତା ବୋଲି ସୁନାମ ଯାର
ତୁମ ତନୁ କହ ପାଇବ କାହୁଁ ?

ଚରଣ ଚାଳିଲେ ଏ ଭୂଇଁ ପରେ
ଭଙ୍ଗିମା କେତେ ଉଠଇ ଫୁଟି
ମରାଳ ତୁଲରେ ତୁଲଇ କିଏ ?
ଉପମା ଦିଏ କେ ସିଂହ କଟୀ !

ନବୀନ ଆଷାଢ଼ କଳା ବଳାକା
ଝାନ୍ଦା କରଇ ଏ କେଶ ଦାମ
ବେଣୀରେ ଖୋଷିଲେ କୁସୁମ କଳି
ଛନ ଛନ୍ ହୁଏ ଏ ମୋର ପ୍ରାଣ ।

ଦୁଇଟି ତରୁଣ ଗୋଲାପ କଳି
ଅଧର ଯୁଗଳେ ସତେ ବା ଫୁଟେ
ହସି କଥା କହ୍ନ ହସିଲେ ତୁମେ
ପରାଣ ସାଗରେ ଜୁଆର ଉଠେ ।

ମଫସଲ ଗାଆଁ ବଙ୍କା ପଥ
ସମ ଏ ତୁମର ଭୂରୁ ଯୁଗଳ
ସେ ପଥେ ଚଳଇ ଚିତ୍ତ ମୋର
ନୀରବ ବଚନେ ଯୋଡ଼ଇ କର ।

ସଜ୍ଞ, ତୁମ ଏଇ ଅଙ୍ଗତଳେ
ଏ ଯେଉଁ ରୂପର ଅନଳ ଜଳେ
ତାକୁ ସିନା ମୁହିଁ ପାଉଚି ସୁଖ
ତାକୁ ସିନା ପୂଜେ ହୃଦୟ ତଳେ ।

ଲିଭିଗଲେ ଏଇ ରୂପର ଆଭା
ଶୁଖିଗଲେ ଏଇ ଶୋଭାର ନଈ
ଧ୍ୟାନ କରି ଥରେ କୁହ ଗୋ ସଜ୍ଞ
ତୁମର ପୂଜାରୀ ହେବ କ ନାହିଁ ?



# ଅଯାଚିତ ଧନେ ପୁଣି
# ଏତେ କଳପନା ?

ମାଗି ତ ନଥିଲି ପାଶେ ଦିନେ ଦିଅ ବୋଲି
ଅଯାଚିତେ ଦେଲି ସିନା ହୃଦୟଟି ମେଲି
ଅଯାଚିତେ ଢ଼ାଳିଥିଲି ଏ ନୟନ ପରେ
ତବ ସେ ନୟନ ଯୁଗ ସେନେହେ-ଆକୁଳେ ।
ମରମ ନୀରବ ବାଣୀ ମରମେ ମିଳାଇ
ଏ ଜୀବନ ଆଶା ଦେଉଥିଲ ମୁକୁଳାଇ ।
କେମନ୍ତେ କହିବ ସଖା କି ଆଶା-ଦୁଆରେ
ପୁଲକ ପଲକେ ଚୁହୁଁଥିଲ ପଦତଳେ ।

ନ ଜାଣେ କା' ଆଶେ ବସି ପଢ଼ିଲି ଅତୀତ
ଫିଟାଇଲି ଜୀବନର ଗୁପତ ଚରିତ
ମିଶାଇଲି ଯେତେ ଗାନ ସମୀରେ ଉଦାସେ
ତୁମ ଲାଗି ସିନା ସଖା ବିଜନ ପ୍ରବାସେ ।
ଆସିଲେ କମ୍ପନଟିଏ ଧମନୀରେ ନିତି
ସଭିଙ୍କ ସମ୍ମୁଖେ ଦିଏ ତୁମ ନାମ ଚିନ୍ତି ।
ନିଶୀଥେ ପଢ଼ଇ ତବ ନାମ ତୁନ ତୁନ
କେତେ ନୀରବରେ ତୋଳି ସଙ୍ଗୀତ-ଉଜାଣି ।

ବରଷା, ବସନ୍ତ, ଶୀତ ମଣିଲି ମୁଁ ଏକା
ସେ କୋଳେ ମେଲିଲି ମୋର ଜୀବନ ଦାପ୍ତିକା

ସେ ଗଗନେ ଗୁନ୍ଥିଁ ଥିଲ ଏ ନୟନ ତାରା
ତବ ସ୍ନେହ ଭରା-ବାଣୀ ମରମେ ଉଚ୍ଚାରି ।
ସେ ତପନ ହାସେ ବୁଲିଲି ହେ ବିଲ ବନେ
କେତେ ସରାଗରେ ହସି ପୁଲକି-ମଣ୍ଡନେ ।
ସେ ସମୀରେ ସେ ସଲିଳେ ସପନ ବିଳାସେ
ତବ ଛବି ହସି ନିତି ଜୀବନ ପରଶେ ।

ଚପଳ-କିଶୋର କାଳ ନଥିଲି ସେ ମନ
ସେ କାହାଣି, ସେ ଗୃହାଣି, ସେ ସବୁ ବଚନ
କି ଜ୍ୟୋତିଭରା ସେ ନେହେ ଗୁନ୍ଥିଁ ଥିଲ ବାରେ
ବୁଝିବାକୁ ତର ଆହା ! ନଥିଲି ଅନ୍ତରେ ।
ଫେଇଦେଲେ ଅଯାଚିତେ ହୃଦୟ ଉଦାସେ
ମଣିଲି ଏ ସୁଖ ସିନା ବିଭୁ ଶୁଭାଶିଷେ
କମଳ କୋମଳ କରେ ପରଶି ମୋ ବୁକୁ
ପୋଛିଦେଲ ଲୁହ ଧାରା ଏ ଶ୍ରାନ୍ତ ପଲକୁ ।

କିଏ ଜାଣିଥିଲି ତବ ହୃଦୟ ପିପାସା
ସାରା ଜୀବନଟା ଅହୋ ! ହଳାହଳ ମିଶା ।
ଦେଖେ ନୟନରେ ଆଜ କୁଟୀଳ ଗୃହାଣୀ
କେତେ କପଟରେ ଭାସିଯାଏ ମୁଖେ ବାଣୀ ।
ସେ କର ପରଶ ଆଜ ଖଡ୍ଗ କଠୋର
ଥରିଯାଏ ବୁକୁ ସାରା ନେତ୍ରୁଁ ବହେ ନୀର ।
ବୁଝି ତ ନ ପାରେ ତବ ଜୀବନ ବାସନା
ଅଯାଚିତ ଧନେ ପୁଣି ଏତେ କଳପନା ?

# ଯାତ୍ରୀ

ପଥିକ ହେ,
ଅସୀମର ଯାତ୍ରୀ
ଗରଜେ ସମ୍ମୁଖେ ତବ ଏ ଭୀଷଣ ରାତ୍ରି ।
ବାଜେ ଦଶେ ଦଶେ
ଶ୍ରାବଣୀ ଆକାଶେ
ବେଦନା, ଯାତନା, ବ୍ୟଥା ବିଶ୍ୱ ଜୀବନର
ବିଶ୍ୱକୁଞ୍ଜ ବନେ ବଂଶୀ ବାଜେ ଦ୍ୱାପରର ?

ଚାଲି ଯାଅ, ଯାଅ ଚାଲି
ଯମୁନା ଉଠିଛି ଫୁଲି
କୂଳ ଆଲିଙ୍ଗନେ ନାଚେ ଉନ୍ମତ୍ତ ତରଙ୍ଗ
ଜୀବନରେ ନାଚ ନାଚ—ଚିର ଅନ୍ତରଙ୍ଗ;
ଗାଅ ଗାଅ
ସୁପ୍ତ-ବ୍ୟଥା
—ହାହାକାର, ହାହାକାର, ଚିର ହାହାକାର
ଗର୍ଜିଉଠେ ଜଗତର ନିବଦ୍ଧ-ଝଙ୍କାର
ବିପୁଳ, ସୁନ୍ଦର
ବିଶ୍ୱକୁଞ୍ଜବନେ ବଂଶୀ ବାଜେ ଦ୍ୱାପରର ?

ଫେରନାହିଁ, ଯାଅ ଚାଲି ଯାତ୍ରୀ
ଏ ଭୀଷଣ ଏ ଶ୍ରାବଣ ରାତ୍ରି
ବଜ୍ର ଆସେ, ଆସେ ରେ ପାଗଳ,
ଶ୍ମଶାନର ରୁଦ୍ର କୋଳାହଳ
ଭୋଳାନାଥ ଗାନେ, ପ୍ରାଣେ
ବିଦ୍ୟୁତର ହାସ ହାଣେ ।

ଉଠେ କିଏ
ଯୁଗ ଯୁଗାନ୍ତର ଶ୍ୱାସ ?
ଚ୍ଛଲରେ ପଥିକ,
ଭାଙ୍ଗି ଅବରୁଦ୍ଧ-କାରା, ଦ୍ୟୁଲୋକ, ଲୋକ ।

ଆଜ,
ପ୍ରଳୟ ଜଳଦ ପୁଞ୍ଜେ
—ବିଶ୍ୱବନେ ବ୍ରଜ କୁଞ୍ଜେ
ରୁଦ୍ଧ, ଅନ୍ଧ ଅନ୍ଧ ରନ୍ଧେ ଆସିଛି ଆହ୍ୱାନ
ରକ୍ଷାକର ଯାତ୍ରୀ ଆମନ୍ତ୍ରଣ ।
ଏ ଯୌବନ ପ୍ରାଣେ ଶିଳା କର ପ୍ରାଣମୟ,
ନୋହୁ କ୍ଷୀଣ ପ୍ରାଣ, ଅସହାୟ,
ଚ୍ଛଲଯାତ୍ରୀ, ଚ୍ଛଲ ଯାତ୍ରୀ
[illegible]କୁଳ ଗଭୀର ରାତ୍ରୀ
ନାହିଁ ପଥ
ନାହିଁ ରଥ
ଏକାକୀ ନାହିଁ କେ ସାଥ;
ଉତ୍ତରଳ ଅଗ୍ନି ଶିଖା ଆଗେ ଆଗେ ଜଳେ
ପୋଡ଼ି ପାପ ଅତ୍ୟାଚ୍ଛରେ ।

ଚ୍ଛଲ ଯାତ୍ରୀ, ଚ୍ଛଲ ଯାତ୍ରୀ
ଅନନ୍ତ ଉଦାର ରାତ୍ରି
କେତେ ଦୂର ସେ ଯେ ତୋର ଦଗ୍‌ଧାନ ଲକ୍ଷ୍ୟ
ଅଲକ୍ଷ୍ୟର ତପ୍ତଶ୍ୱାସେ ପୂରି ଉଠୁ ବକ୍ଷ
ଜନ୍ମୁରେ ଅନଳ
ତଡ଼ିତ୍ ଚଞ୍ଚଳ
ଚ୍ଛଲ ଚ୍ଛଲ ଚ୍ଛଲ ।

ରଚନାକାଳ—୧୯୪୪

# ବୀରବାମା

ଜାଗିଛି ନୀରବେ ସୁପ୍ତ-ଧରଣୀ ସୌର-କନକ-କିରଣ-ଜାଲେ
କୁଞ୍ଜ-କାନନ ପୁଷ୍ପ-ବିତାନେ ଗୁଞ୍ଜେ ମିଳିନ୍ଦ ମୋହନ ତାନେ
ବାଜୁଛି ବାଜଣା ଶୁଭୁଛି ଗାନ
ମୁଖର ଅମ୍ବର ଆକୁଳ-ପ୍ରାଣ
ଲାଗିଛି ବ୍ୟାକୁଳ-କର୍ମ-ସାଧନ ଦୃପ୍ତ-ବଇରୀ-ଖଡ଼ଗ-ଧାରେ ।

ଶୂନ୍ୟ ଆଜ ରେ ଦୁର୍ଗ-ଅଙ୍ଗନ ବୀର୍ଯ୍ୟ-ବିକ୍ରମ ସାହସ-ଭରା
ବୈରୀ ତାଡ଼ନେ ବ୍ୟସ୍ତ ହୃଦୟ ପ୍ଲାବିତ ଧରଣୀ ରୁଧିର-ଧାରା
ବୁଡ଼ିଛି ବାସନା-ବିଷାଦ ନୀରେ
ଭଗ୍ନ-ଦୁର୍ବଳ ଓଡ଼ିଆ ବୀରେ
ଭଗ୍ନ ଆଜ ରେ ଓଡ଼ିଆ ପ୍ରାଣ ଶୂନ୍ୟ ଆବାସେ ଜଗତ ସାରା ।

ଢାଳିଛନ୍ତି ପ୍ରାଣ-ତପ୍ତ-ଶୋଣିତ ରଣେ ନରପତି ନୀରବ ହାସେ
ଢାଳିଛନ୍ତି ଯେତେ କର୍ମ ପିପାସା ଅନ୍ତିମ ଶୟନେ କରୁଣ ଶ୍ୱାସେ
ଦେଇଛନ୍ତି ଓଡ଼ିଆ ହୃଦୟ-ବଳ
ମରତ ସମ୍ପଦ ଜୀବନ-ଶିଖା
ଜନନୀ ଚରଣେ କରିଛି ଅଳ ସେ ବଇରୀ-ଶୋଣିତ-ଲେପିତ-ବେଶେ ।

କାଳ କୋଳେ ଯାରେ ଗଲେଣି ଚଳି ରେ ଅବଗାହି ଏବେ ରୁଧିର ନଦେ
କମ୍ପାଇ ଶାଣିତ ଖଡ଼ଗ ପୁଲକେ ଅକ୍ଷତ-କନକ-ସମ୍ପଦ-ମୁଦେ ।
ନାଶିବେ ବଇରୀ ଲଙ୍ଘି ପ୍ରାଚୀର
ଧ୍ୱଂସିବେ ଅବଳା ଶୂନ୍ୟ ଅନ୍ତର
ଘୃଣ୍ୟ ପିଶାଚ କରିବ ଲୀଳା ଓଡ଼ିଆ ଦୁର୍ଗେ କପଟ ଛନ୍ଦେ ।

ଶୂନ୍ୟ ଆଜି କି ଦୁର୍ଗ ଅଙ୍ଗନ ନାହିଁ ନାହିଁ ସେ ତ ରହିଛି ପୂରି
ଅତୁଳ ସାହସ ଭୀମ ବିକ୍ରମ ପୁଣ୍ୟ ବାସନା ଅନ୍ତରେ ଭରି
ଦେଖ ଦେଖ ଦୂରେ ପୁଲକ ଚକ୍ଷେ
ବାନ୍ଧି ସାହସ ପାଷାଣ-ବକ୍ଷେ
ଦେଖରେ ଆସୁଛି ବୈରୀ-ବିଜୟୀ ଉତ୍କଳ ବାଳା ଖଡ଼ଗ ଧରି ।

ସ୍ୱର୍ଣ୍ଣ କମଳ ଲୋଟୁଛି ଚରଣେ ପୁଲକ-ସମ୍ପଦ ଆନନେ ଖେଳେ
ବୀର ଅଙ୍ଗନା ସଙ୍ଗିନୀ-ମେଳେ ଝଟକେ ଶାଣିତ-ଅସି ଉଜ୍ଜ୍ୱଳେ
ଗୃହିଁଛି ବଇରୀ ଚକିତ-ନେତ୍ରେ
ଗୃହିଁଛନ୍ତି ରବ ମୋହନ-ମନ୍ତ୍ରେ
ଟୋଳ ଭୂଧର ଉନ୍ନତ-ଶିର ନିରେଖେ ଅବଳା ପାଦପମେଳେ ।

ଫୁଟିଲ ପବନେ ବୀର-ସଙ୍ଗୀତ "ବନ୍ଦେ ଜନନୀ ଜନମ ଭୂମି
ସୁପ୍ତ ପବନେ ଦେ ମା' ଶକ୍ତି, ଢାଳି ଦେ ମରମେ ମୋହନ ବାଣୀ"
ଗଡ଼ିଲ ଅୟୁତ-ଅରାତି-ମୁଣ୍ଡ
କମ୍ପିଲ ଧରଣୀ, ଗଗନ ଦାଣ୍ଡ
ଅରାତି ରକ୍ତ ତରପିଲେ ହସି ପ୍ରାଣ-ପତି ନାଚେ ମର୍ତ୍ତ୍ୟ ମୋହିନୀ ।

ଜଳଇ ଅନଳ ଊର୍ଦ୍ଧ୍ୱ ଲେହନେ କରାଳ-ବିକାଶେ ଫଣୀ ଥରେ
ଥରହର ଆଜ ଧରଣୀ-ଉରସ ପଶିବେ ଅବଳା ଅନଳ-ପୁରେ
ଗୁ ରୁ ଗରଜନ ଉଠିଲା ଗାନ
ଫୁଟିଲା ମହିମା ନାଚିଲା ପ୍ରାଣ
ସରଳ ଚରଣ ଅଭିସାରେ ବାମା ଢାଳିଲେ ଜୀବନ ମାତୃ ମନ୍ଦିରେ ।

ଧନ୍ୟ ହୋଇଛି ଓଡ଼ିଆ-ପ୍ରାଣ ଅମର ସଙ୍ଗୀତ ଉଠିଲା ଗୃଣ୍ଡେ
କନକ-ଅକ୍ଷରେ ଅମର-ନାମ ଲେଖାହେଲା କ ରେ ଭାରତ ପିଣ୍ଡେ
ଉଡ଼ିଲା ପୁଲକେ ବୈଜୟନ୍ତୀ
ଫୁଟିଲା ଜୀବନେ 'ଜନମୀ-ପ୍ରୀତି'
ଗୁ ରୁ-ଗରଜନେ ଗାଇଲା ଜଳଦ 'ଓଡ଼ିଆଣୀ' ନାମ ଗଗନ ଦାଣ୍ଡେ

ରଚନା କାଳ—୧୯୬୦

# ଆଜି ତ ପଡ଼ୁଛି ମନେ

ଆଜ ତ ପଡ଼ୁଛି ମନେ
ଧରଣୀ ସୀମାରେ ଗଗନ କାଳିମା
ମିଳାଇଲା ଯେବେ ରାତି
ପୁରାଙ୍ଗନାର କରତଳ ପରେ ଜଳିଲା ପ୍ରଥମ ବତି ।

ନଭସ୍ପୃଷ୍ଟ ଶେଷ ବିହଗ ରାଗିଣୀ
ଢାଳିଲା ବିରହ ବାଣୀ
ଏତେବେଳେ କା'ର ବନ୍ଧମା ବଧୂ
ଧରିଲା ଯୁଗଳ ପାଣି !

ଅଧରେ ଭାଷିଲା ବଚନ ତାହାର,
ବଢ଼ାଇ ଅଧର ଧୀରେ
ମୁଗ୍ଧ ଏ କବି ଘେରିଲା ତାହାର,
କୁସୁମ ସୁରଭି ଶିରେ ।

ସାଗର ଭାଷଇ କଳ କଲ୍ଲୋଳେ,
ସମୀରଣ ସନସନେ ।
ଏ ମୋର ଅଧର ଭାଷିଲା ଯେ ବାଣୀ
ଆଜ ତ ପଡ଼ୁଛି ମନେ ।

# ତାହାର ସବୁ

ଅଧର ତଳ ମଧୁରେ ମୋର କାମନା ଜାଗେ ଗୋ,
ତାହାର ଚଳ ଚରଣଗନ୍ଧ ଏ ବୁକେ ଲଗେ ଗୋ !
ମୁଦ୍ରିତ ତାର ଲୋଚନ ଗାର ମରମେ ପୀଡ଼େ ଗୋ,
କୋମଳ ତାର ସେ କରତଳ କାମିନୀ ଗଢ଼େ ଗୋ !

ତାର କନକ ଅଙ୍ଗୁଳିର ପରଶ ଝୁରେ ଗୋ,
କଣ୍ଠବାଣୀ ମନ୍ଦାକିନୀ କାହିଁ ସେ ଦୂରେ ଗୋ ?
ତାର ବିଗ୍ରହ ବିଧୁର ବ୍ୟଥା ଅଧୀର କରେ ଗୋ;
ତା ତନୁ ତାପ ପୁଲକ ଆଣେ ଏ ତନୁ ତଳେ ଗୋ !

ତାହାର ତନୁ ଛର୍ଥେ ମୋର ବାରୁଣୀ ବୁଡ଼ ଗୋ,
ତା ରୂପ ସମ ବିଶ୍ୱେ ନାହିଁ କଣିକ ମୂଲ ଗୋ !



# କ୍ଷଣିକ ଦେଖା

ସପନ ସମ ଲପନ କା'ର
　　　　　　ପଡ଼ଇ ମନେ
ଜୀବନ-ପଥରେ ପକାଇ ଗାର
　　　　　　ଚପଳ ଚରଣେ
କାହିଁ ସେ ଗଲା, ରହିଛି ତାର
　　　　　　ଗନ୍ଧବାସ,
ରହିଛି ତାର ବିଦାୟ କାଳ
　　　　　　ଅଧର ହାସ !

ସେହି ଯେ ଗଲା ଏକଇ ଦୀପ
　　　　　　ଜୀବନେ ଜାଳି;
ସେହି କ୍ଷଣିକ ଉତ୍ସବରେ
　　　　　　ନାଚୁଇ ତାଳି;
ବଜାଇ ଗଲା କଣ୍ଠେ ତାର
　　　　　　ମରମ ଗୀତ;
ସେହି ସପନ ଜାଗଇ ମନେ
　　　　　　ଦିବସ ରାତି ।

ଆଜି କି ଥରେ ପଡ଼ିବ ନାହିଁ
　　　　　　ସେହି ଚରଣ;
ଯୌବନର ରମ୍ୟ ପଥରେ
　　　　　　ବଧୂ ବରଣ;

ହେବ କି ନାହିଁ ! ସୁନ୍ଦରୀ ଗୋ,
ଏଇ ଜୀବନେ
ଏ ସାରା ପଥ କାଟିବି ଖାଲି
ତୁମରି ଧ୍ୟାନେ ।

ମରଣ ମୋର ମର୍ମ୍ମ ଭରିବ
ତୁମରି ବାଣୀ,
ଧର୍ମ ମୋର ତୁମରି ରୂପ
ଲୋକନ, ରାଣୀ ?
କର୍ମ ମୋର ସେ ଅପଘନେ
ଅବଗାହନ
ବଞ୍ଚିବି ମୁଁ ସନ୍ଧ୍ୟା କେସନେ
ରଜନୀ ଦିନ !

ଲୋକ ଲୋଚନ ଅନ୍ତରାଳେ
ହୋଇଲା ଦେଖା;
ମରିବେ ଖାଲି ତୁଚ୍ଛ୍ରବେଦ ସେ
ହୋଇଲା ଲେଖା !
କେବେ ଯେ ପୁଣି କେଉଁ ଜନମେ
ସୁନ୍ଦରି ଗୋ;
ତୁମରି ଛାରେ ଲାଗିବ ମୋର
ଏଇ ତରୀ ଗୋ !



# ପ୍ରବାସ ପଥେ

ପ୍ରଶାନ୍ତ ପ୍ରାନ୍ତର ପଥେ ବଲ୍ଲରୀ ବିତାନୁ
ଭସିଆସ ସ୍ନିଗ୍‌ଧ ସମୀରଣ
ଭସି ଆସ ହୃଦ କ୍ଷେତ୍ରେ ମଧୁର କମ୍ପନେ
ବାସନ୍ତିକ ମୋହନ ନିସ୍ୱନ !

ଅନନ୍ତ ଉଦାସେ ବସି ନିର୍ଜ୍ଜନତା କୋଳେ
ଦିଗ୍‌ବଧୂର ରମ୍ୟ ଶ୍ୟାମାବାସେ
ଆର୍ଦ୍ର-ବିପଞ୍ଚୀମା ସେହ୍ନ ପରଶି ପ୍ରସାରେ
ବଜାଅ କେ ପୁଲକ ବିଳାସେ ?

ଉଠାଅ କେ ହୃଦୟର ନିଗୂଢ଼ କନ୍ଦରୁ
ଏ ନୀରବ ପ୍ରଶାନ୍ତ ଗୀତିକା ?
ସ୍ତବ୍‌ଧ, ଶୂନ୍ୟ, ସାରା ସ୍ତବ୍‌ଧ ଅବନୀ ଉରସ
ଦେଖେ ଆଜ ପୂର୍ଣ୍ଣ ବିଶ୍ୱସିକା ।

ଉଚ୍ଛ୍ୱାସେ ଉଚ୍ଛ୍ୱାସ ଏ ଯେ ଭବେ ଏକାକାର
ଭୁଲେ ଭବ ପଥ ଏ ସମ୍ପଦେ
ହରିଏ ସ୍ୱାତନ୍ତ୍ର୍ୟ ଆଜ ଚିନ୍ତା ଆପଣାର
ଭ୍ରମେ ଭ୍ରମେ କଳ୍ପନା ଏ ପଦେ ।

ପଲକୁ ପଲକେ ଶୂନ୍ୟ ଏ ପୂର୍ଣ୍ଣ ପ୍ରାଣତା
ଖେଳେ ବିଶ୍ୱ-ଅନନ୍ତ-ବିତାନେ
ଭବିଷ୍ୟ ବିଭବ ଯେନ ମଳୟ କମ୍ପନେ
ଆକାଙ୍‌କ୍ଷାର ସ୍ୱର୍ଣ୍ଣ-ନିମନ୍ତ୍ରଣେ ।

ଲୁପ୍ତ ଆଜ ଘନଘଟା, ସୁପ୍ତ ସୌଦାମିନୀ
ଭିନ୍ନ ହୈମନ୍ତିକ-ନୀଳ-ତୁଷାର ପଟଳ
ଅନନ୍ତ ବିସ୍ତାରେ ଶୂନ୍ୟ, ବିପୁଳ ଅବନୀ
ଝଳେ ଲଭି ଆଶୀର୍ବାଦ କା'ର ।

ବହି ଆସ ସମୀରଣ ସେ ଅନନ୍ତ ପାରୁ
ଲଙ୍ଘି ଶ୍ୟାମ ବନୀଳ-ଭୂଧର
ଢାଳ ରବି ସେ ଅନନ୍ତ-ନଭସ-ବିତାନୁ
ଶୂନ୍ୟ ପଥେ ତପ୍ତ-କର-ଜାଳ ।

ବସନ୍ତ ହେ ! ମଧୁମୟ ନିତ୍ୟ ମନୋହର
ରଚ କ୍ରୀଡ଼ା ପରାଣ ଆବେଗେ
ଢାଳ ଢାଳ ସୁମଧୁର ସଙ୍ଗୀତ ଲହରୀ
ପିକକୁଳ ସୁର-ମୁଗ୍ଧ ରଗେ ।

ଶୁଣରେ ହୃଦୟ ଆଜ ଭାଙ୍ଗି ମୋହ ବାଡ଼
ଦେଖ ବାରେ ଅମୃତ ନୟନେ
ଦିବଷଦ-ସ୍ୱର୍ଣ୍ଣସମ ଅମୃତ-ବୈଭବ
କର୍ମକ୍ଷେତ୍ରେ ବିପୁଳ ଧିଆନେ ।

ଶୀତ ଶୀର୍ଣ୍ଣ ଧରଣୀର ଜରା-ଜୀର୍ଣ୍ଣ-ବେଶ
ଅପଗତ ମଳୟ-ଲାଞ୍ଛନେ ।
ଉପଗତ ସଜୀବତା ଆଶାମୟୀ ମୂର୍ତ୍ତି
ପାଶେ ଆଜ ଲଳିତ କମ୍ପନେ ।

ଦୂରେ ଯାଏ ଧୀରେ ବହି ଜ୍ୟୋତିଧାର ଏ ଯେ
ମିଶେ କାହିଁ କେଉଁ ସିନ୍ଧୁ ଅଙ୍କେ ।
କାହିଁ ଦୂରେ ଡାକେ କଏ ସେ ସିନ୍ଧୁ ପୁଳିନେ
କାହା ଆଶେ ପରାଣ ପୁଲକେ ।

ଆସ ଆସ ପଥିକ ହେ ଫେରି ଏ ସପଦେ
ପଥମୟ ପ୍ରାନ୍ତର ଉରସେ ।
ଫିଟାଇ ହୃଦୟ-ଦ୍ୱାର ଭରି ଦିବ୍ୟ ମୁଦେ
ଏ ରୁଚିର ଲୀଳା କର୍ମ-ରସେ ।

ଭୁଲିଅଛ ପଥ ଆହେ ବିଜନ ଅତିଥି
ଜୀବନର ଲକ୍ଷ୍ୟ ଦେଇ କାଟି
ନିରାଶା ସରିତ କୂଳୁ ସେ ସିନ୍ଧୁ ଉରସେ
କାହିଁ ଯିବ ଆକୁଳେ ଏକାଟି ?

ଫେରି, ଦେଖ ହୃଦୟର ସ୍ୱର୍ଣ୍ଣ ଭବିଷ୍ୟତ
ଫିଙ୍ଗି ଶୀର୍ଣ୍ଣ ନାବ, ସେ ପୁଲିନେ
ଫେରି ପଢ଼ ଜୀବନର ଅଜ୍ଞାତ ଚରିତ
ଯାଅ ଆଜି ବର୍ତ୍ତମାନ ଗାନେ ।

ରଚନା କାଳ—୧୯୨୦



# ସଖା ମୋ ଆସିବେ

ବଚନ ପଦକ ପାଇଁ କରିଥିଲି ଆଶା ବସି
ସୋଦର ଜାଗର ଜାଳି ପରବାସେ ଦିବାନିଶି ।
ଗୁନ୍ଥିଲି ବକୁଳ ଦଳେ ମାଳାଟି ସରମେ ଧରି
କେତେ ଦିନ ଗଲି ମୋର, 'ସଖା ମୋ ଆସିବେ' ବୋଲି ।

ଶଶୀ ବୁଡ଼ିଯାଏ, ତା'ରେ ନୀରବେ ପୁଛଇ ଭାଷା,
ମନେ ମନେ କାଲିକି ତା ଆଗମ ଆଦରି ଆଶା
ସୁଲୁ ସୁଲୁ ପବନରେ ଚମକି ଅନାଇଦିଏ
ଶୂନ୍ୟ ମନେ ଶୂନ୍ୟ ପ୍ରାଣେ ଗୁଣୁ ଗୁଣୁ କିଏ ଗାଏ ?

କଣ୍ଠ ତ ଗଲାଣି ବସି, ସଖା ତ ଆସିଲେ ନାହିଁ
ସଜନ ପ୍ରଦୋଷେ ଆଉ ବସିବି ବା କା'ରେ ଚାହିଁ ?
କାହା ଗଳେ ଦେବି ଏ ଯେ ଇପ୍‌ସିତ ବକୁଳ ମାଳା
କାହା ହୃଦେ ଢାଳି ଦେବି ମୋ ମନ ଭାବନା ଧାରା ?

ନିରାଶେ କି ଫେରିବାର ହେବ ଏ ସଜନ ପଥୁଁ
ଲୁଚି କି ପଡ଼ିବ ସତେ ସଖା ନାମ ସଖା ଚିତ୍ରୁଁ !
ପାସୋରିବି ବୋଲି ତାରେ ଯେତିକି ଫିଙ୍ଗଇ ଦୂରେ
ସ୍ୱପନେ ସପନେ ମୋର ସେ ମୂରତି ଆସି ଖେଳେ ।

ସେ ରୂପଟି ଆସି ମୋର ହୃଦୟେ ଉଠଇ ଜାଗି,
ଅପରୂପ ମୂରତି ସେ ହୁଏ ମୁହିଁ ଅନୁରାଗୀ ।
ଏ ଜାଗରେ ଏ ମାଳାଟି ଦେଉଥିବି ଥର ଥର
ମରମ ଆଦରେ ଢାଳି ନେତ୍ର ଅଶ୍ରୁ ଅନିବାର ।

ରଚନା କାଳ—୧୯୨୧

# ମରମ ବେଦନା

କଉଳ ମରମ ତବ ହେ ଲବେ ନପାରେ ଜାଣି
ସରଗ ନନ୍ଦନ ଅବା ସେ ଖ୍ରାମ ନରକ ଭୂମି ।
କପଟ ଏ ସ୍ନେହ ସୋହାଗ ବଡ଼ ବିଷମ ଲାଗେ
ଖିବ୍ର ଏ ଛଳନା ଛନ୍ଦରେ ପ୍ରାଣ କ ଭଳ ଜାଗେ ?

ହନେ ହନେ ମନେ ପଡ଼ୁଛି ବ୍ରେଗ ଶେଯଠେ ମୋର
କୋମଳ ସେ କର ପରଶେ କମ୍ପି ଉଠେ ଶରୀର
ସେ ପରଶ ଆଜ ଲାଗିଲେ ପ୍ରାଣ ଉଠଇ ଥର
କହିବାକୁ ଯାଇ ନ ପାରେ କହି ମରମ ଧର ।

ଆନ କ୍ଷଣେ ପୁଣି ଆସଇ ମନେ ଆବର ଚିନ୍ତା
ତୁମେ କ ଧରଚ ମୂରତ ଉଠେ ଖ୍ରାମ ଖ୍ରୁତା ?
ବୁଝିପାରୁ ନାହିଁ କେ ଖ୍ରୁ ତୁମ ହନୁଛି ଆଉ
ତୁମର ଖ୍ରୁତା ବନ୍ଧୁ ହେ ତୁମ ମରମେ ଥାଉ ।

ବନ୍ଧୁ ବୋଲ ଆହା ବାରେକ ଖ୍ରଇ ଗ୍ରହିବ ନାହିଁ ?
ଛନ୍ଦ ଛଳନାର ଥଳ ଏ ନୁହେଁ ମରତ ଭୂଇଁ ।
ଏ ଯେ ତରୁଲତା ଗହଳେ ପିକ ଗାଉଛ ଗୀତ
ସେ ଗୀତର ନାହିଁ ବନ୍ଧୁ ହେ ତୁମ ସ୍ନେହ ନହିତ ।

ରଚନା କାଳ—୧୯୨୦



# ସୋଦର ସ୍ମରଣେ

କାହା ପାଇଁ ହଅ ଭାଇ ଲୁହ ଏଥି ଢାଳ
ଶେଷ ଶେଯେ ଶୋଇଛନ୍ତି ଏ କା' ନେହ ସଂଖାଳ ?
କେତେ ଯେ ଯୋଜନ ପାରେ ଗିରି, ନଘ ଡେଇଁ
ବୁଡ଼ିଥିବ ଭାଳେଣିରେ ତା ଜନନୀ କାହିଁ ?

ଗଣୁ ନ ଥିବ ସେ ଆଜ ରଜନୀ ତାମସ
ବସନ୍ତ ମଳୟ ଭେଦ ଉଠୁଥିବ ଶ୍ୱାସ ।
ଲଭୁଥିବ ବେଳେ ବେଳେ ଅଜାଣତ ବ୍ୟଥା
ରକତ ସମ୍ବନ୍ଧ ତାର କହୁଥିବ କଥା ।

ନମିଷକ ବାରତା ସେ ମଣୁଥିବ ଯୁଗ
ହୃଦେ ଜାଣି ଉଠୁଥିବ ଅଜ୍ଞାତ ସୋହାଗ
ଏଠି ଯେ ଶୋଇଛନ୍ତି ପୁଅ ସଖା ସନମାନେ
ଏ ଯେ ଶେଷ ଶୁଆ କଥା ଥିବ କି ତା ମନେ ?

ଏ ମୋହନ ତନୁ ଶିଖି କେତେ ଯୁଗ ପାଇଁ
ବନ ଗିରି ଧରି ତାର ନେହେ ଥିବ ଉଇଁ ।
ଗଣ୍ଡି ଧନ କଣ୍ଠଗାନ ଚମକେ ଚମକେ
ଭ୍ରମେ ଶୁଣୁଥିବ ତାର ପଶୁପକ୍ଷୀ ଡାକେ ।

ସ୍ୱଜନେ ସ୍ୱହରି ଏଥି ସୋଦର ସ୍ୱଳାସେ
ଦରଫୁଟା ହାସେ ଧନ ଶୋଇଛନ୍ତି ତ 'ଶେଷେ ।
ପାଉଁଶେ ମିଶାଇ ତାର ଶିଶୁ ଅପଘନ
କରୁଥିବା ଏଣିକ ହେ ସୋଦର-ସ୍ମରଣ ।

ରଚନା କାଳ—୧୯୨୧

# ମୋ ଫୁଲଟି ହସେ

ଗୁପତ ଏ ବୃନ୍ଦାବନେ ଚିରସାଥୀ ବେଶେ
ଚିର ଶ୍ୟାମ ଗୁଳ୍ମ ତଳେ ମୋ ଫୁଲଟି ହସେ ।
ବିଜନେ କହେ ମୋ କଥା ହୃଦେ ହୃଦ ଦିଏ
ଦରଫୁଟା ବେଶେ ଶିଶୁ ଅଧର ମେଲଇ ।

ଦଳେ ଦଳେ ଥାଏ ତା'ର ଭବିଷ୍ୟ ମୋ କଥା
ବିନ୍ଦୁ ବିନ୍ଦୁ ଶିଶିରେ ସେ ଥାଏ କି ବାରତା ?
ନୀରବ ପୁଲକ ତା'ର ସମୀରେ ଉଚ୍ଛୁଳ
ପୂର୍ଣ୍ଣ ପରିମଳ ରୂପେ ବିଶ୍ୱେ ଯାଏ ଭରି ।

ଉପବନ ପାଳିତା ମୋ କେତେ ଲତା ପାଶେ
ଏଭଳି ମୋ ସାଥୀ କେତେ ଥାଆନ୍ତି ଉଦାସେ ।
ନେତ୍ରଭରି ଦେଖୁଥାଏ ସେ ମୋହନ ଶିଶୁ
ହୃଦ ଭରି ଢାଳୁଥାଏ ନିବିଡ଼ ମାଧୁରୀ ।

ବସିଛି ମୁଁ ଏକା ଆଜ ଦରହାସ ଦେଖି
ଧୂଳି ଶେଯେ କେତେ ଫୁଲ ଲୋଟନ୍ତି ଅବନୀ ।
ମୋ ଅଜ୍ଞାତ କଥା ଯେତେ ସେ ଜୀବନେ ଦିଏ
ବିଶ୍ୱ-ବଡ଼ ଦାଣ୍ଡେ ଅବା ପଡ଼ିଛନ୍ତି ଶୋଇ ।

ଏ କାନନେ ବିତାଇଚି ଯେତେ ବା ଦିବସ
ଏ ଧୂଳି ଏ ମାଟି କୋଳେ ଢାଳି ଅଶ୍ରୁ ହାସ
ସବୁଥିରୁ ଟିକି ଟିକି ଦେଖି ସେ ବିଭବୁ
ବିସ୍ମରଇ ଦିନେ ନେବ ବିଦାୟ ଏ ଭବୁଁ ।

ରଚନା କାଳ—୧୯୨୧

# କର୍ମ-ବେଦ

ତୁଙ୍ଗ-ଭୂଧର-ବୀଲେଖା-ବୀଲେ ପୁଣ୍ୟ ଅଜ୍ଞାତ ଉଠଇ ଖେଳି
ବାଣ-ଶୂରର ବିମଳ କୀର୍ତ୍ତି ସମୀର ସରତେ ସଙ୍ଗୀତ ହେଲ ।
ସୁଗ୍ମ-ଶିଖର ମୁଖର ରଙ୍ଗେ ଉଠଇ ଯା କୋଳେ ତରଙ୍ଗଗାନ
ପୁଣ୍ୟ ବାସନ୍ତ-ବଞ୍ଜୁଳ-କୁଞ୍ଜେ ନଚ୍ଚଇ ପୁଲକେ ଆକୁଳ ପ୍ରାଣ ।
ସେହ୍ନ ମୋ ଜୀବନ କର୍ମ-ବେଦ ବାଣୀ-ମନ୍ତ୍ର ଫୁଟିଛି ଯହିଁ
ଚନ୍ଦ୍ର-କବିର ଅପୂର୍ବ ଛନ୍ଦ ଶୁଣଇ ପରାଣ ନୀରବ ରହି ।

ବୀର୍ଯ୍ୟ-ବହ୍ନମ ପୀୟୂଷ ସ୍ରୋତ ବୀର ପରଶେ ଉତ୍କଳ ବନେ
ପୁଷ୍ଟ କରଲ ଓଡ଼ିଆ ପ୍ରାଣ ଦୂର ବଙ୍କାଡ଼େ ଖେଳି ସଘନେ ।
ତପ୍ତ ଧମନୀ ଶୋଣିତ ଧାର ଖେଳାଲା ପୁଲକେ ତଡ଼ିତ ବେଗେ
ଶୂନ୍ୟେ ନାଦିଲା ପ୍ରେମ ସଙ୍ଗୀତ 'ଜନ୍ମଭୂମି ମା' ନବୀନ ରାଗେ ।
ସେହ୍ନ ମୋ ଜୀବନ କର୍ମ-ବେଦ ବାଣୀ ମନ୍ତ୍ର ଫୁଟିଛି ଯହିଁ
ଚନ୍ଦ୍ର-କବିର ଅପୂର୍ବ ଛନ୍ଦ ଶୁଣଇ ପରାଣ ନୀରବ ରହି ।

ବୀର ତରୁଣୀ ସରଳା ସାଧ୍ୱୀ ବହ୍ନର ଯା କୋଳେ ଗାଇଲେ ଗୀତି
କନକ ମଞ୍ଜରୀ ଚରିତ ଗାଥା ଢାଳଇ ପରାଣେ ବସୁନ୍ଧ ପ୍ରୀତି ।
ହସନ୍ତି ଯା କୋଳେ ଜଗତ ବରଦା 'ମାଆ ଭଗବତୀ' ଭୁବନେଶ୍ୱରୀ
ପୁଲକେ ଉତ୍ଫୁଲେ ଶୂନ୍ୟ ଜୀବନ ନବ ଜାଗରଣେ ଅଜ୍ଞାତ ସ୍ୱର ।
ସେହ୍ନ ମୋ ଜୀବନ କର୍ମ-ବେଦ ବାଣୀ ମନ୍ତ୍ର ଫୁଟିଛି ଯହିଁ
ଚନ୍ଦ୍ର-କବିର ଅପୂର୍ବ ଛନ୍ଦ ଶୁଣଇ ପରାଣ ନୀରବ ରହି ।

ସ୍ୱର୍ଣ୍ଣ ଅକ୍ଷରେ ଗଗନ ଚୁମ୍ବି ଉଡ଼ୁଥିଲା ଯହିଁ କାରତ କେତୁ
ମାତିଲା ପ୍ରେମେ 'ଓଡ଼ିଆ ଖାର' ଫିଙ୍ଗି ବିଷାଦ ଯାତନା ଚେତୁ ।
ଚମ୍ପାଗଡ଼ର ପୁଣ୍ୟ ରଭସେ ଢାଳିଥିଲା ଖାର ଶୋଣିତ ଧାର
ବାହୁ ବଳଯ୍ୱେ ବୈରୀ ଅଗ୍ରେ ଦେଖିଛୁ ତଟିମା ବିମଳ ନୀର ।
ସେହି ମୋ ଜୀବନ କର୍ମ-ବେଦ ବାଣୀମନ୍ତ୍ର ଫୁଟିଛୁ ଯହିଁ
ଚନ୍ଦ୍ର-କବିର ଅପୂତ ଛନ୍ଦ ଶୁଣଇ ପରାଣ ନୀରବ ରହି ।

ଗନ୍ଧନ ଭେଦ୍ଧ ସଉଧ ପନ୍ତ ତୋଳିଥିଲେ ଯହିଁ ରଜତଶିର
(ଏବେ)ସୁପ୍ତ ଶ୍ରବଣେ ତାନ୍ତୁ ପରାନେ ଖେଳଇ ସେବନେ 'ନୀଳାଦ୍ରି ପୁର'
ଧନ୍ୟ ହୋଇଛୁ ଜୀବନ ଯାର ସମ୍ମୁଖ-ସମରେ ପରାଜ ବୈରୀ
'ଦେଶ ବତ୍ସଳ ନୀଳାଦ୍ରି ଖାର' ଗାଉଛୁ ଅଖିଳ ମରମ ଧାର ।
ସେହି ମୋ ଜୀବନ କର୍ମ-ବେଦ ବାଣୀ ମନ୍ତ୍ର ଫୁଟିଛୁ ଯହିଁ
ଚନ୍ଦ୍ର-କବିର ଅପୂତ ଛନ୍ଦ ଶୁଣଇ ପରାଣ ନୀରବ ରହି ।

ଶୁଭ୍ର ତରଙ୍ଗ ଉନ୍ନତ-ଶିର ଲୋଟଇ ଯା ପଦେ ଚିଲିକା କୂଳେ
ପ୍ରେମମୟୀ ମା ପ୍ରକୃତ ରାଣୀ ପୁଣ୍ୟ ଲର୍ଦ୍ଧିତ ବିଭବ ମୂଳେ ।।
ଶ୍ୟାମ-ସୋଲଖି କୁଞ୍ଜ ବିତାନେ ପ୍ରେମ ସଙ୍ଗୀତ ଫୁଟିଲା ଯହିଁ
ନଗ୍ନଇ 'ଅବଳା' ଶୂନ୍ୟ-ପ୍ରାଣ ନଗ୍ନଇ ପାଦପ ପାଷାଣ ଭୂଇଁ ।
ସେହି ମୋ ଜୀବନ କର୍ମ-ବେଦ ବାଣୀମନ୍ତ୍ର ଫୁଟିଛୁ ଯହିଁ
ଚନ୍ଦ୍ର-କବିର ଅପୂତ ଛନ୍ଦ ଶୁଣଇ ପରାଣ ନୀରବ ରହି ।

ରଚନାକାଳ—୧୯୧୯



# ଭ୍ରାତୃ ବିଚ୍ଛେଦେ

୧

ଗଲ କେଣେ ଲୋକନାଥ ତେଜି ଧନ ଭାଇକି
ପ୍ରାଣର ପ୍ରିୟତମ ଭାଇ ଆଉ ମନେ ନାହିଁ କି,
ଭାଇ ହେ ! ଲୁଚାଇଦେଲ କାହିଁ ସେ ମାଧୁରୀକି
ଝୁରି କରିବୁ ତ ସିନା ଅଶ୍ରୁସିକ୍ତ ମହୀକି ।

ପୋଷିଥିଲୁ କେତେ ଆଶା ତୁମ୍ଭଠାରେ ମହତ
ଘଟାଇଲ ଶେଷେ ବିଧି କେବଳ ଅଶ୍ରୁପାତ
ଭାଇହେ ! ସରବ ଗୁଣେ ତୁମେ ଥିଲ ଭୂଷିତ
ସବୁ ଆଶା ଚଲିଗଲ ତୁମ୍ଭ ଯିବା ସଙ୍ଗେତ ।

ସରଳ ହୃଦୟ ତବ ସୁସରଳ ମୂରତି
ଆତ୍ମା ପରହିତ ଜ୍ଞାନେ ଥିଲ ଭାଇ ସୁମତି
ଭାଇ ହେ ! ସ୍ୱହସ୍ତେ ଧରି ନବଶିକ୍ଷାର କାତି
କାଟିଦେଲ ଗ୍ରାମବାସୀ ହୃଦୁ ଜାଲ ବିଭ୍ରାନ୍ତି ।

ଯେଉଁ ନବ ଶିକ୍ଷା ଦେଇ ଗଲ କୁମାରଙ୍କରେ
ଭୁଲିବୁ କି ତାହା ଭାଇ କେବେ ଯୁଗ ଯୁଗରେ ।
ଭାଇ ହେ ! ପଡ଼ିଥିଲେ ଗ୍ରାମବାସୀ ଅଜ୍ଞାନତା ଧୂମରେ
ଜ୍ଞାନ ବାଟ ଖୋଲି ଦେଇ ଚଲିଗଲ ସ୍ୱପୁରେ ।

ଦୃଢ଼ କରି ଗଲ ଯାହା ଗ୍ରାମ ବିଦ୍ୟାଳୟଟି
ରଖିଅଛୁ ତାହା ଭାବ ହୃଦୟର ମଣିଟି
ଭାଇ ହେ ! ବୁଡ଼ାଇଦେଲ ଜୀବନର ତରୀଟି
ମରୁଛନ୍ତି ଦୁଃଖାନଳେ ବନ୍ଧୁ ଝୁରି ଝୁରିଟି ।

ଦେଖୁ ସଦା ସମ୍ମୁଖରେ ତବ ଶୁଭ୍ର ମୂରତି
ଯେବେ ହସୁଁ ଫୁଟି ଦିଶେ ଶୁଭ୍ର-ରଦନ-ପନ୍ତି
ବନ୍ଧୁ ରେ ! ଘଟାଇ ଦେଲୁ ଆଣି ଏଡ଼େ ବିପତ୍ତି
ଗୁଣ ଗୁଣି ହୃଦ ହୁଏ ଶତଧାରେ କରତି ।

ଚିନ୍ତିତ ନ ଥିଲି ପ୍ରାଣ ଦିନେ ତବ ବିଚ୍ଛେଦ
ଘଟାଇଦେବ ହେ ବନ୍ଧୁ ତବ ଦୁଃଖ ସମ୍ବାଦ
ବନ୍ଧୁ ରେ ! କି ବନ୍ଧୁ ତୋର ଭାଙ୍ଗି ସୁଖ ପ୍ରମୋଦ
କ୍ଷଣକେ ଆଚ୍ଛାଦିଦେଲୁ ହୃଦେ ନିବିଡ଼ ଖେଦ ।

ପୁଣି ଗମନର କାଳେ ଭାଷିଥିଲ ଏତିକି
ମନେପଡ଼େ 'ଆସ ବାବୁ ଟିକେ ମୋର କତିକି'
ଆହା ସେ, ବିମଳ ପ୍ରେମ ଦହେ ଆଜି ଛାତିକି
ସ୍ମୃତିପଥେ ଆଣେ ପ୍ରାଣ ତବ ସେ ଭାରତୀକି ।

# ଗଣନାଥ ପୂଜା ଉପଲକ୍ଷେ

ଏତେ ଦିନେ କିଏ -          ଦେବତା ପରିଏ
ଆସିଛ ଏ କୁଞ୍ଜବନେ ହେ
କୁଞ୍ଜ କଣ୍ଠକଣ୍ଟ          କଳିକା କୁସୁମ
ଫୁଟାଇ ରଖିଛ ମନେ ହେ
ଆସିଛ ତ ଅବତରି
କରେ ପାଶାଙ୍କୁଶ ଧ୍ୱଜା ଧରି ହେ ।୧।

ଏ ଭୂଇଁ-ତଳପେ          ରତନ ଧୂଳି ଏ
ଶିଶୁ କର ପଦ ଲାଗି ହେ,
ଏ ଯେ କୁଞ୍ଜବନେ          ଶୀତଳ ପବନେ
ପରାଣ ଉଠଇ ଜାଗି ହେ
ଜାଗି ଉଠେ ଶିଳା ପ୍ରାଣେ
ଏ ଶରତ ସୁଲଳିତ ଗାନେ ହେ ।୨।

କେତେ ଆଶା କେତେ          ନିରାଶା ଜୁଆର
ଏ ଭୂମିରେ ଗଲ୍ପ ଖେଳ ହେ
ପ୍ରଦୋଷେ ପ୍ରଭାତେ          ଶୁଭେ କୁଞ୍ଜ ପଥେ
ଆଜ ଶିଶୁ କରତାଳ ହେ
ଉଠେ ମନେ ସ୍ୱପ୍ନମାଳଣ୍ଟ
କରିବୁ ଗଗନ ପରାଜୟ ହେ ।୩।

ବନବାସେ ରହି          ବନବାସୀ ହୋଇ
ଦୂର ପରବାସୀ ଶିଶୁ ହେ
ପର ଆପଣାର          କରନ୍ତୁ ଏ ପୁର
ତବ ଆଶିଷ ବରଷୁ ହେ !
ଉଠୁ କଣ୍ଠେ ତବ ଗାନ,
ଗଗନେ ପବନେ ତୋଳି ତାନ ହେ ।୪।

ଆସଇ ବିପଦ, ଅଛଟି କି ଦେବ
ଏ ଶିଶୁ ସଦମ୍ପ ଧୈର ହେ,
ହୃଦେ ବଳ ଭର ଆମେ ବ୍ରହ୍ମଚାରୀ
ଯିବୁ ଲକ୍ଷ୍ୟ ପଥେ ଚାଲି ହେ,
ପଛେ ଥିବେ ପଡ଼ି ଘାରୁ
ପାରହେବୁ ଏ ବିପଦ ଗିରୁ ହେ ।୫।

ଭାଙ୍ଗି ଦେବ କିଏ ଆମ ଖେଳ କୁଞ୍ଜ
ଯିବେ ଚାଲି ବ୍ରହ୍ମଚାରୀ ହେ
ଭାଜିବ ଏ ମେଳା ସଜନ ନିକୁଞ୍ଜ
ବିଜନ ହୋଇବ କାଲି ହେ,
ଧୂଳି ହେବ ରତ୍ନ ରେଣୁ
ବାଜିବ କି ନାହିଁ ତବ ବେଣୁ ହେ ।୬।

ଶ୍ମଶାନ ପୂଜାରୀ ପର ଏଥେ ବୁଲି
ଦେଖିବେ ବାଟୋଇ ଜନେ ହେ,
ଏକୁ ଆନେ ସବେ ହେବେ କୁହାକୁହି
ସଙ୍କୋଚ ଆପଣା ମନେହେ
କହ ଆଜ ସୁରବର,
ପଥ କାହିଁ ଡ଼ାକୁ ଶିଶୁକୁଳ ହେ ।୭।

ହେଇଛ ଦେଉଛ ବିଭୁ ବହୁବାର
ବିପଦ ପରୀକ୍ଷା ପ୍ରାଣେ ହେ
ତୁମର ସମ୍ପଦ ମଣି ପଦେ ପଦେ
ଘେନନ୍ତୁ ତା ସନମାନ ହେ
ସେ ଯେ ସ୍ପୃଷ୍ଟ ଚନ୍ଦ୍ର ରାଶି
କୋମଳ ପରାଣେ ଅଛୁ ମିଶି ହେ ।୮।



# କିଏ ଜାଣିଥିଲା

ଫୁଟିଥିଲି ଫୁଲଟିଏ ରଜା-ବଗିଚାରେ
ଉଷାର-କମଳ-ଶୁଭ୍ର-ଦିବ୍ୟ ଆଲୋକରେ
ମୋହୁଥିଲି ରାଜ-ପୁର ସେ ଦିବ୍ୟ ସୁବାସେ
ବଢାଇଲି ହାତ ମୁହିଁ ତୋଳିବାର ଆଶେ ।

କିଏ ଜାଣିଥିଲା ତା'ର ତଳେ ଥିଲା ଅହି
ଧରି ନ ଧରୁଣୁ ମୋତେ ଦେଲା ବିଷେ ଦହି ।
ସେ ବିଷ ଜ୍ୱାଳାରେ ମୁହିଁ ପଡ଼ିଲି ଭୂତଳେ
ଭୋଗିଲି ମୁଁ ଯୋଗ୍ୟଫଳ ଯା ଥିଲା କପାଳେ ।

ଆସିଥିଲେ ରାଜପୁତ୍ରମାନେ ଉପବନେ
ଶୁଚିମନ୍ତ ହୋଇ ଗନ୍ଧ ପୁଷ୍ପ ଆହରଣେ ।
ମୋ ରୂପ ଦେଖିଣ ସେହି ଦୟା ହେଲା ମନେ
କରିଲେ ଆରୋଗ୍ୟ ମୋତେ ଔଷଧ ଦାନେ ।

ସେ ଦିନୁ ପୂଜିଲି ତାଙ୍କୁ ଗୁରୁପଦେ ମୁହିଁ
ଯେ ଆଶା ଭରସା ଥିଲା ଦେଲି ତାଙ୍କଠେଇଁ ।
ପୁଷ୍ପଗନ୍ଧ ସାଧୁ ଯେହୁ ବୋଲନ୍ତି ମରତେ
ତାଙ୍କ ପରି ପାଷଣ୍ଡ ତ ନାହିଁ ଏ ଜଗତେ ।

ଛି ଛି ତା ମାନବ ଜନ୍ମ, ଧିକ ସାଧୁପଣ
ବାହାର କୋମଳ ଯାର ଭିତରଟି ଟାଣ ।
ମୁଖେ ହରି ଅନ୍ତେ ଛୁରୀ ଯେମାନେ ଧରନ୍ତି
ଦେଶ ଗ୍ରାମ ସମାଜର କଳଙ୍କ ରଟାନ୍ତି ।

ଏପରି ଲୋକର ମୁଖ ଗୃହ୍ନିଁ ନ ଯୋଗାଇ
ଛି ଛି ତା'ର ସାଧୁପଣ ଛି ଛି ତା ବଢ଼ାଇ ।

ରଚନାକାଳ—୧୯୧୬



## ଦୋଳଛୁଟିଁ

କହିବାକୁ ଗଲେ ଭାଇ ହୃଦୟ କାହାଣୀ
କିଏ କହୁଥାଏ ପଛେ 'ନାହିଁ ନାହିଁ' ବାଣୀ—
ନାହିଁ ନାହିଁ କହନା ହେ ଆନ ପାଶେ କଥା
ହୃଦୟ ବାରତା ତୋର,--ଅଜ୍ଞାତ ବାରତା ।

ବାଧାବନ୍ଧ ପ୍ରତିକୂଳେ ତୋଳିଛୁ ତୁ ଆଶା ।
ନୀରବେ ଗାଉଛୁ ବସି କି ବୋଧନ ଭାଷା ।
ଆକୁଳେ ଭେଟିଛୁ କେତେ କୁବେର ନନ୍ଦନ
ମର୍ମରେ କେ ବୁଝେ କହ ଦରିଦ୍ରର ମନ ?

ଗତ ନିଧି ଗୋଟି ଗୋଟି ଚିର ବିମୋହନ
ଚିର ସ୍ମୃତି ଡୋରେ ବାନ୍ଧିଅଛୁ ଏ ଜୀବନ ।
ନ କହି ନ ପାରୁ ରହି ପୁଣି ସେ ବାରତା
କି ଲଗି କରୁଛୁ ଆଜି ସେ ଅଜ୍ଞାତ ଚିନ୍ତା ।

ବୁଝି କି ପାରିବୁ ଭାଇ ସେ ସମ୍ପଦ ମୋର
ତୋର ଲୁହ ସଙ୍ଗେ ତୁ ଯେ ମୋର ଆପଣାର
ମୋ ହୃଦ ତୋ ହୃଦ ମିଶି ଯୁଗଳ କମ୍ପନେ
ଯୁଗଳ କାହାଣୀ ଆଜି ଗାଇବା ଏ ବନେ ।

ରଚନାକାଳ—୧୯୧୯

# ବିଦାୟ ସଙ୍ଗୀତ

(୧)

ହେଲଣି ମେଲଣି ବେଳ ବସି ଆଉ ନିମିଷେ
ଯିବ ସଖା, ଯିବ ବନ୍ଧୁ ଯେଝା ସୁଖ ନିବାସେ । ପଦ ।

ତୁମ୍ଭ ପ୍ରୀତି ଭଲ ମନେ ରହିବୁ ଏ ପଲ୍ଲୀ-ପ୍ରାଣେ
ଏ ଯେତେ ସୁଖ ସମ୍ଭାରେ ପଥ ଗୃହିଁ ବରଷେ ।୧।

ତରୁତଳେ ଫୁଲ ଫଳେ ଏ ଅର୍ଚ୍ଚନା ଘେନିବାରେ
ରଖିଥିବ ଜୀବନର ସୁଖ ସ୍ମୃତି ପରଶେ ।୨।

ଏ ସରଳ ଶିଶୁକୁଳ ଢାଳି ପ୍ରୀତି ହୃଦୟର
ଦେଉଛୁ ମେଲଣି ବନ୍ଧୁ ଘେନ ସୁଖ ମାନସେ ।୩।

ଯିବ ତୁମ୍ଭେ ଦୂରେ ଚାଲି ଏ ନିକୁଞ୍ଜ କରି ଖାଲି
ହସି ଫୁଲ ସନମାନେ ଥିବୁ ଆମେ ହରଷେ ।୪।

ଥିବ ବନ୍ଧୁ ଯହିଁ ଯେବେ ସୁଖ ସ୍ନେହ ଗଉରବେ
ନ ଦେବେ ବିସୋରି ଏ ଯେ ଶିଶୁ ଶୁଭ ଦିବସେ ।୫।

( ୨ )

ହେଲା ଅବସାନ ଶୁଭ ସମ୍ମିଳନ,
ଆସିବ ବିଚ୍ଛେଦ ମିଳନେ । ପଦ ।

ଏହି ଭବ ସଂସାର ନଶ୍ୱର ଅସାର
ଅସ୍ଥିର ଜୀବନ ବୁଦ୍‌ବୁଦ ଭଙ୍ଗୁର
ଜୀବନ-ନାଟକ ଅଭିନୟ ଯାକ
ସରିବ ପରଦା ପଡ଼ନେ । ୧ ।

ଜୀବନ-ସିନ୍ଧୁର ସୈକତ ପୁଳିନେ
ପଦଚିହ୍ନ ଯାକ ରହିବ ମଣ୍ଡନେ,
ଦେଶର ଭବିଷ୍ୟ ଜାତିର ସର୍ବସ୍ୱ
ନୀରବ ପ୍ରେରଣା ଜୀବନେ । ୨ ।

ସେ ପଥେ ପଥିକ ଆଜ ବନ୍ଧୁଗଣ,
କଠୋର ସାଧନେ କରି ପ୍ରାଣପଣ,
ଚାଲ ହେବ ଯେବେ ଉନ୍ମତ୍ତ ସରବେ
କର୍ମମୟ ଏହି ଭୁବନେ । ୩ ।



# ଉଦ୍‌ବୋଧନ ଗୀତ

ଜନନି ! ଉଠ ଗୋ ଆଜ ବାସନ୍ତ ମୋହନବେଶେ ।
ଲକ୍ଷ-ହୃଦେ ଐକ୍ୟ ଗୀତ
ନୂତନ ଆଶାରେ ଭାସେ । ଘୋଷା ।

ଶତ ଶୋଷଣିଷ୍ଟ ଉତ୍କଳ ଆସୁ
କନକ-ଅଙ୍କିତ ପ୍ରାଣେ ବିକଶୁ
ଦେଖୁ ଗୋ ଧରଣୀ ତୋ ଶୁଭଙ୍କରଣୀ
ବନ-ଗିରି-କୁଞ୍ଜ ହାସେ । ୧ ।

ଗହନ କନ୍ଦରେ ବିଜନ ପଥେ
କୁସୁମ-ମଞ୍ଜୁଳ କୁଞ୍ଜ ନିକେତେ
ପ୍ରତିତାଳେ ଖେଳି ଉଠୁ ଗୋ ଉଚ୍ଛଳ
ତୋ ସଙ୍ଗୀତ ସୁର ଦେଶେ । ୨ ।

ବାତ ବିଚଳିତ ଲହରୀ ମେଳେ
ହସି ଫେନହାସେ ସିନ୍ଧୁ ଅଧରେ
ନାଦେବ ଗମ୍ଭୀରେ ଭ୍ରମ ରସାତଳେ
ସେ ସଙ୍ଗୀତ ସୁର ଦେଶେ । ୩ ।



# କ୍ରୋଧ

କ୍ରୋଧ ଜଣେ ଶାଣଦିଆ କାତିକ
ଫିଙ୍ଗି ଦିଏ ପଦେ ସ୍ନେହ ପ୍ରୀତିକ । ୦ ।
ନ ଚହ୍ନେ ସେ ପଥ କୁଟିଳ କଣ୍ଟକ
ମଶାପ୍ରାୟ ମଣେ ମତ୍ତହସ୍ତୀକ ।୧।

ଦିନକୁ ସେ ମଣେ ନିଶାର୍ଦ୍ଧ ସମାନେ
ନ ମଣେ ଆପଦ ଅମାସ୍ତିକ ।୨।
ନ ମଣେ ସେ କଳା ନ ମଣେ ସେ ଧଳା
କଳା ଧଳା ତା'ର ଏକ ଘାତିକ । ୩ ।

ନିଆଁକୁ ମଣେ ସେ ଅତି ସୁଶୀତଳ
ଯେଣୁ ହୃଦ ନିଆଁ ଦହେ ଘୃତିକ । ୪ ।
ବାଘ ଥିଲେ ଆଗେ ଠେଲିଦିଏ ରାଗେ
ସବୁ ଏକା ଦିଶେ ତା'ର ଆଖିକ । ୫ ।

ଯେଣେ ଚାହେଁ ଦେଖେ କ୍ରୋଧର ସରିତ
ଆଣେ ମଗ୍ନତକା ଭୁକ୍ଷା ଘାତିକ । ୬ ।
ଘର ଲାଗେ ତାକୁ ବଣର ଭିତର
ବୀଣା ସ୍ୱର ଶ୍ରୁତିକନ୍ତୁ ଶ୍ରୁତିକ । ୭ ।

କ୍ରୋଧ-ମତ୍ତ ନର ମନ ବଚନରେ
ହୃଦୟେ ନ ଆଣେ ତିଳେ ଖ୍ରୀତିକ । ୮ ।



# ବନଫୁଲ

କୁଞ୍ଜବନେ ଛଟିମା ଛଟେ ନିତ
କୋଇଲ ଯେବେ ପୁଲକେ ଗାଏ ଗୀତ
ଲହରୀ ରଚେ ଚପଳ ତା'ର ଖେଳ
ଫୁଟ ଗୋ ବନଫୁଲ !

ଅରୁଣ ଯେବେ ଯାମିନୀ ଅବସାନେ
କନକ ମିଶା କିରଣ ଢାଳେ ପ୍ରାଣେ,
ଦୂର୍ବାଦଳେ ଶିଶିର କରେ କେଳି
ଆସ ଗୋ ଅବତରି ।

ବରଷା ନିଶି ଅନ୍ଧକାରେ ମିଶି
ବଜ୍ର ଯେବେ ଥରାଏ ଦଶ ଦିଶି
ପ୍ରଳୟ ପଥେ ବରଣମାଳା ଧରି
ହସ ଗୋ ପ୍ରାଣ ଭରି ।

ନିରାଶା ଯେବେ ଆପଦେ କରି ସାଥୀ
ଜୀବନେ ଆଣେ ଗଭୀର ଅମାରାତି
ସାହା କେ ନାହିଁ, ଯାତ୍ରୀ ଏକା ଭୁଲେ
ଫୁଟ ଗୋ କୁତୂହଳେ ।

ଲିଭଇ ଦୀପ ସାଧନା-ପଥେ ଯେବେ
କାର ଚରଣେ ଚେତନା ନ'ଥେ ଲବେ
ସେକାଳେ ଆମ ଫୁଲ୍ଲ ଗୋ 'ବନଫୁଲ' !
କରିବ ଅନୁକୂଳ !
ଫୁଟୁଚୁ ବନେ, ଆମେ ଯେ ଶତ ଶତ
ମରନ୍ତେ ଫୁଲ୍ଲ କୁସୁମ ଅବିରତ,
ଅଜଣା ନଈ—ବିଜନ ବନେ ବସି
ଝଡ଼ୁଚୁ ନିତ ହସି ।



# ଉଦ୍‌ବୋଧନ

ଉଠ ଭାଇ ସରବେ ଅଭିନବ ବଳେ ମାତି । ଧ୍ରୁବ ।
ଦେଇ ପ୍ରାଣ ଧନ ମାନ - ରଖ ସେ ପୂରୁବ ମାନ
ଉଠୁ ହେ ନବପ୍ରାଣ, ନବ ତେଜ ବୀର୍ଯ୍ୟ ଭାତି ।
ପଡ଼ୁଛି ନବ ସୁଯୋଗ ପଡ଼ୁଛି ମାହେନ୍ଦ୍ର ଯୋଗ
ଫୁଟୁ ସେ କମଳିନୀ ପାଇ ଅଭିନବ ଜ୍ୟୋତି ।

ହସୁଛି ଦେଖ ଗଗନ ବିମଳ ଚାରୁ ମଣ୍ଡନ
ଘୋଷୁଛି ମହାନନ୍ଦେ ଆଜ ନଭ ବିଶ୍ୱପତି
ବସି ନବ କିଶଳୟେ ପରଭୃତ ରସେ ଗାଏ ।
ନିର୍ଝର ଝର ଶବଦ ହୃଦେ ହୃଦେ ଉଠେ ଭାତି ।

ଜାଗୁ ଆହେ ନବ ପ୍ରାଣ ରହୁ ହେ ଏକତା ଧ୍ୟାନ
ଏକ ମନେ ଏକ ପ୍ରାଣେ ଚିନ୍ତ ସଦା ଦେଶୋନ୍ନତି ।
କରି ଆଲିଙ୍ଗନ କରେ ସମାଦରେ ପରସ୍ପରେ
ଉଠ ହେ ସୋଦରେ ଆଜ ପାହିଲାଣି ଅମାରାତି ।

ଫାଟୁଛି ନବ ସିନ୍ଦୁର କରଣ ଧାର୍ଣ୍ଣ କନ୍ଦର
ବହେ ଏକତା-ସ୍ରୋତ କଳସ୍ୱରେ ଦିନରାତି ।
ଘୋଷ ସେହି ଐକ୍ୟଭାବ ଉଠୁ ସେହି ମହାଭାବ
ବହୁ ନବୀନ ମଳୟ ବିଭୁପଦେ ଏ ଆରତି ।

ରଚନା କାଳ — ୧୯୧୭

# ତୁମରି ବେଦନା ତଳେ

ଦୁଆରେ ଏ କଏ ଡାକୁଛି ଶୀର୍ଣ୍ଣ- ଶୀତ !
ନୀରବ ଏ ତବ କ୍ଳାନ୍ତ ପୀଠରେ ବାଜି ନାହିଁ ଇଙ୍ଗିତ ?
ତବ ସମାଧିର ନବ-ନୀରାଜନା ଅର୍ଘ୍ୟ ଥାଳୀଟି ଧରି
ତୁମରି ବୁକେ ଏ ନବ ବସନ୍ତ ଚକିତେ ଉଠିଛି ଥରି ।

ତବ ବେଦନାର ରକ୍ତ ଲେଖାଟି ଯେମନ ମଧୁ କିଶଳୟେ
ଯନ୍ତ୍ର ସେ ତା'ର ଅନ୍ତର ଗୋଟି ଫେଇଦିଏ ନିର୍ଭୟେ ।
ବିଶ୍ୱ ଦୁଲାଳ-ବିଦ୍ରୋହୀ ସୁତ ଆସିଛି ତୁମରି ଘରେ,
ତୁମରି ଏ ବନେ, ତୁମରି ଦୁଆରେ, ତୁମରି କୁଞ୍ଜତଳେ,

ତୁମରି ନଗ୍ନ ଶୀର୍ଣ୍ଣ ତଟେ ଜୀର୍ଣ୍ଣ-ବକୁଳ ବନ;
ନୀରବ ଯହିଁ ଜୀବନ-ଯନ୍ତ୍ର, ରଚିବ ସେ ଆଶ୍ରମ ।
ବିଦ୍ରୋହୀ ସେ, ମାନବ ନାହିଁ ଜଗତ ବନ୍ଧ ରାଶି,
ତବ ତପ-କ୍ଳିଷ୍ଟ ପ୍ରାଣେ ଯିବ ସେ ଗର୍ବେ ହସି ।

ବିଦ୍ରୋହୀ ସେ ଯୌବନ ସେ ରୁଦ୍ଧଁ ଗୃହଁ ବୈରାଗୀ
ଶ୍ମଶାନେ ଆଜି ବାଡ଼ବ ସିଦ୍ଧି ବିଶ୍ୱ-ଜୀବନ ଲାଗି
ଉନ୍ମାଦ ସେ— ଉନ୍ମୁଖ ସେ—ଦିଅ ଅଭିନନ୍ଦନ;
ଆଗମନେ ତା'ର କପୋଳେ ଫୁଟେ କୁଙ୍କୁମ ଚନ୍ଦନ !

ସେ ବୁକୁ ତା'ର ବିଶାଳ ବିଶ୍ୱ ତବ ବୁକେ ଯିବ ଫୁଟି
ହସିବ ମରଣ-କ୍ଳାନ୍ତଭାଲେ ଯୌବନ ପରିପାଟୀ ।
ଏତେ ଦିନ ଶରଲକ୍ଷ୍ମୀ ତ ତବ କୋଳେପଡ଼ିଥିଲେ ଶୋଇ
ବିଦ୍ରୋହୀ ନେତା ଆସିଛି ହେ ତା'ର ବିଶ୍ୱମୁକ୍ତି ପାଇଁ ।

ଆଶିଷମୟ ପରଶ ତା'ର, ଜୀବନମୟ  ବକ୍ଷେ,
ନଚ୍ଚାଇଦେବ  ଜଗତ ସାରା ମଧୁର ତା'ର ଲକ୍ଷେ ।
ବାଇବ ମୂକ  କୋକିଳମୁଖେ ବିଶ୍ୱ  ଚମକ ଗାନ
ମନ୍ଦର  ଧ୍ୱସେ କରିବ ତା'ର ଗାଣ୍ଡୀବ ସନ୍ଧାନ ।

ଏଇ ଘେନ—ଏଇ ଘେନ  ଉପହାର
ଘେନ ହେ ଶୀର୍ଣ୍ଣ ଶୀତ
ଜରା ଜର୍ଜ୍ଜର ଭ୍ରମର କୁଞ୍ଜେ ସଙ୍ଗୀତ ଅନାହତ ।
ଭ୍ରମର ବେଦନା ଛଳେ
ବିଶ୍ୱ ମଳୟ ପୁଲକୋଚ୍ଛ୍ୱାସ ବହିଯାଏ ଅବହେଳେ !



# ବାଟୋଇ

ଗାଆଁ ବାଟେ ଗଲ ସ୍ବପ୍ନ ଦୂର ଗାଆଁ ବାଟୋଇ
ଖସ୍ରା ଚସ୍ରା ତଳେ ଯହିଁ ନିତି ଫୁଲ ଫୁଟଇ
ନିତି ଯହିଁ ପରଶଇ କାହା ନବ-ବଧୂର
ଶଙ୍କିତ ପଦଯୁଗ କମଳ କି ମଧୁର ।

ବାଟେ ଗଲ, ବାଟୋଇ ସେ ନ କହିଲ ବଚନ
ଚଞ୍ଚଳ ଗତି ତା'ର କଲା ଗୀତି ରଚନ,
ବସିଥିଲା ବାତାୟନ ପଥଧାରେ ତରୁଣୀ,
ପଲ୍ଲୀ- ଅଳସ ଦିନ ସତେ ତା'ର ସରୁନି ।

କହିଲା ସେ ସଙ୍ଗିନୀ ଅଞ୍ଚଳ ଓଟାରି—
ଏ ଯେ ଗଲା କେତେ ଦୂରେ କହିବୁ କି ବିଚାରି ?
କେଉଁ ପୁରେ ପୁରବାଳା ବସିଥିବ ଅନାଇଁ
ପୋଷାଶୁଆ ଶାରୀକି ତା ପିଞ୍ଜରାରେ ମନାଇଁ ।

ଅବା କାହିଁ ମାଆ କା'ର ମନ ମାରି ମଉନେ
ଦିରସେ ବିତାଉଥିବ କାଳ, ପୁଅ ବିହୁନେ ।
ଦୂରର ବାଟୋଇ ଆଜି ଦୂରେ ଯାଏ ଫେରି ତ
ସାଗର ପୁଳିନେ ଧାଏଁ ଅବା ଗିରି-ସରିତ !

ନୁହେ କି ସାଗର ଏ ଗୋ ପୁରବାସ ବହାର
ଉଁଠେ କେତେ ନତି ଦୁଃଖ ସୁଖ ଭଟ୍ଟା ଜୁଆର ।
ସାଗର ତଳକୁ ପୁଣି ଏ ଯେ ହୃଦ ସାଗର,
କି ଅତଳ ବିତଳ ଏ ପ୍ରୀତି ଅନୁରାଗର !
ବାଟୋଇସେ ଗଲ୍ କାହିଁ, ବାଟ ତା'ର ସୁମର,
ବୁକୁତଳେ କଏ କଆଁ କଥା କହେ ଆମର ?
ଚମତଳେ କଆ ଥରେ ଏ ତାତଲ୍ ରକତ
ଅଜଣା ଜନରେ ହୁଏ କଏ ଅନୁରକତ ?



# ପାପୀ

ପାପୀ ଚ୍ଚଲେ ପଥ ପ୍ରାନ୍ତ ପରିଚିତ
ଧରଣୀ ତଳେ
ଶିରେ ମାଳ ନଭ ଝଲକ ଉଠଇ
କନକ ଜଳେ ।
ଅଜଣା ପଥରେ ପଥ ବାଛି ନଏ
ନୟନ ପୋଛି ।
ଢଳ ଢଳ ଢଳ ଗଡ଼ିପଡ଼େ ଲୋଳ
ଲୋତକ-ମୋତି,
ଲୋତକ-ମୋତି ।
ଶେଷ ଭାନୁକର କନକ ଜ୍ୟୋତିରେ
ଖେଳେ କି ପ୍ରୀତି !

ପାପୀ ଚ୍ଚଲେ ଜନ ବିଷମ ନୟନ
ଏଡ଼ାଇବାରେ
ଧୂଳି ପଦତଳ, ଘର୍ମ ବିକଳ
ନଗର ଧାରେ ।
ସୁଦୂର ମଳୟ-ମୁଗ୍ଧ ମୁକୁଳ
ଗହଳେ ହସେ ?
ଗୁଞ୍ଜନ କରି ନତ ବନଗୃହି
ମଧୁପ ଆସେ,
ମଧୁପ ଆସେ ।
ପଥିକ ଜନର ବ୍ୟଥିତ ବଦନ
କମଳ ଆଶେ ।

ପାପୀ ଗଲେ ତା'ର ଅପମାନ ଘର
କପାଳେ ବାନ୍ଧି
ଅପବାଦ ତା'ର ସାରା ସଂସାର
ଦେବ କି ବାନ୍ଧି !
ସୁବୋଧ ସୁଜନ ପୁରବାସୀ ଜନ
ପୋଡିଲେ ମଥା,
ପଣ୍ଡିତ ଗଳେ ଉଠିଲା ଉଗାର
ଧରମ କଥା ।
ଖାଲି ତା କଥା—
ପାପୀମନେ ଖାଲି ପଡ଼ିଲା ଉଛୁଳ
ମରମ ବ୍ୟଥା ।

ପାପୀ ଗଲା ଦୂର ମନ୍ଦର ପଥେ,
ଉଠିଲା ଡାକ,
ଚମକଲେ ଅବା ତେତିଶ କୋଟି ସେ
ଦେବତାଯାକ ।
ପୁରୋହିତ ପୁର କର୍ମିତକର
କହିଲା ଡାକ
ପାପୀ ପଦତଳେ ପାପ-ପଙ୍କ ଏ
ରହିଛି ଲାଗି ।
ରହିଛି ବାକ,
ମନ୍ଦରେ ଖାଲି ଥିଲେ ସେହି ମୂକ
ଦେବତା ସାକ୍ଷୀ

ସେ ପାପୀ- ଲୋଚନ ପଡ଼ିଲା ମୁକ୍ତ—
ମଣ୍ଡପରେ,
ପାଣିଯୁଗ ତା'ର ଯୁକ୍ତ କରିଲା
ଭକ୍ତିଭରେ !

ସେ ପାପୀ ବଚନ କରତାଳ ତଳୁ
ଆସିଲା ଫେରି,
ସ୍ଫୂର୍ତ୍ତି ପଥରର ମନ୍ଦ-ଫାଟକ
ଭେଦ ନପାରି,
ଭେଦି ନ ପାରି ।
ପାପୀ ସେ ରହିଲା, ନେତ୍ରୁ ବହିଲା
ତପ୍ତ ବାରି ।

ପାପୀ କହେ ବାଣୀ ଆଦରି କ ପାପ
ରହିଲା ବାକି
ଦେବତା କି ହେଲେ ପାଷାଣ ଦେଉଳେ
ପାଷାଣ ସାକ୍ଷୀ !
ଲୋଚନୁ ରକତ ନିଗାଡ଼ିଲେ ଯେବେ
ନାହିଁ ମୁକତି,
ପତିତପାବନ ନାମଟିଲେ ଅବା
କାହିଁ'ଟି ଗତି ?
କାହିଁଟି ଗତି !
ମନ୍ଦିର-କାରା ଭିତରେ ବନ୍ଦୀ
ଧରମ ମତି !

ରଚନା କାଳ—୧୯୨୪



# ଶୈଶବ ସ୍ନେହ

ଯୁଗଳ ସୋଦର ସୋହାଗ-ଆକୁଳେ
ଶଇଶବ କାନ୍ତି ବନ୍ଧା ସେନେହେ
ତରୁ ଶ୍ୟାମଳତ ପଲ୍ଲୀ ଆଶ୍ରମର
ପୁଣ୍ୟ ମଧୁମୟ ଶ୍ୟାମଳ ଶୋହେ ।

ଏକ ଜୀବନର ମରମ ବାସନା
ଆନ ପ୍ରାଣେ ଖେଳେ ମଧୁ ପୁଲକେ
ସ୍ନେହ ଲତିକାର ମୋହନ କଳିକା
ବିକଶିତ ସଦା ସତ୍ୟ ଆଲୋକେ ।

ହସିଗଲେ ବନ୍ଧୁ ନୀରଦ-ସୋପାନେ
ଦୂର ଅସ୍ତାଚଳ ଶ୍ୟାମଳ ଶିଖେ
ପୁଲକଲା ଯେବେ ଜଗତ ଜୀବନ
ତରୁଣ ତପନ ହେମ- ମୟୂଖେ ।

ନିକୁଞ୍ଜ ନିଳୟେ ଉଭେ ସେ ଯୁଗଳ
ସୋଦର ସୁଲଭ ବିଭବ ବନ୍ଧି
ସ୍ନେହ ପାଟଳିତ ସରଳ କପୋଳେ
ଯାଉଥିଲା ଦସ୍ତା କି ରଙ୍ଗେ ବନ୍ଧି ।

କି ଲଭି ନ ଥିଲା ଶିଶୁ ହୃଦୟ ସେ
ଲଭିବାର ପୁଣି ଥିଲା ଆତୁର
ଜନନୀ ସୋହାଗ ଜନକ ସେନେହ
ପ୍ରକୃତି-ଭବନ ବିଳାସୁଁ ବଳ ।

କୁସୁମ ବନାଣେ ମିଳାଇ ଅନ୍ତରେ
ଶୁଣୁଥିଲେ ଭୃଙ୍ଗ ସଙ୍ଗୀତ ରାଜ
ଏତେ ଦିନେ ପୁଣି ଶାବକଟିଏ ସେ
ପୁଲକ ଜୀବନେ ଭେଟିଲେ ଆଜ ।

ଦୂର ଅନ୍ତରୀକ୍ଷେ ଶିଶୁ ହୃଦୟ ସେ
ବାନ୍ଧିଦେଲେ ସ୍ନେହ ବନ୍ଧନେ ଦୁହେଁ
ଖେଳିଗଲା କବା ଗୋଦାବରୀ କୋଳେ
ଜାତ ସହ୍ୟାଦ୍ରିରୁ ସାଗରଯାଏ ।

ପୀରିତି ପାଳିତ ଜୀବନ ନିଧି ସେ
ଦଣ୍ଡେ ନ ଦେଖିଲେ ନ ଯାନ୍ତି କାହିଁ
ବିହଗ ପ୍ରାଣେ ଯା ଜୀବନରୁ ବଡ଼
ମଣନ୍ତି ଏତକ ଆଶ୍ଚର୍ଯ୍ୟ ତହିଁ ।

ଯୁଗଳ ସ୍ନେହର ଅମୂଲ୍ୟ ସପନ
ରଖିଲେ ଯତନେ ଗମ୍ଭୀର ଘରେ
କେତେ ମଧୁମୟୀ ଗୀତିକା ଖେଳଇ
ସେ ମଧୁ ହୃଦୟ-ପ୍ରୀତି-ମୁକୁରେ ।

ଅବସାନ ପ୍ରାପ୍ତ ବାସର ଯୌବନ
ଚଞ୍ଚଳ ରବ ବାରୁଣୀ-ବାସେ ।
ସରଳ ଚରଣେ ସରଣୀ-ତରଙ୍ଗେ
ଷ୍ଟଳ ଆସନ୍ତି କେ ପ୍ରାଣ ବରଷେ ।

ମିଶିଗଲାଣି ସେ   କନକ ସୋହାଗ
ବିଷାଦିତ ଶୁଣୁ ଲୋତକ ଜଳେ
ଲୁଚି ଗଲାଣିରେ   ପୀରତି ନଳିନୀ
ସରଗ-ପ୍ରଦୋଷ ସରସୀ କୋଳେ ।

ଥିର ଥିର କରି   ନୟନ ଦୁଇ ସେ
କେତେ ରଙ୍ଗେ ଆଜ ବୁଲନ୍ତି ଘରେ
ଆକୁଳେ ଲୋଡ଼ନ୍ତି   କେତେ ବା କାହାକୁ
ଗୃହଁ ମାଳଘନେ ତରୁ ସମୀରେ ।

ଦେଖିଲେ ସେ ଠାବେ   ଶାବକ ଶିରଟି
ବସିଛି ପାରୁଶେ ପୁଲକେ ମଣି
କି କହିବେ ଅବା   ମରମ ବେଦନା
ଶତଧାରେ ହୃଦ ହୁଅଇ ହାଣି ।

ସ୍ନେହର ସମ୍ପଦ   ସ୍ନେହରେ ମିଶିଲା
ଶିଶୁ ପ୍ରାଣେ ହେଲା କି ଅଭିନୟ
ଶିଶୁ ଜୀବନର   ଆଦ୍ୟ ସନ୍ଧି ଏ ତ
ଜଗତ-ମଣ୍ଡପେ ମଧୁ ବିଷୟ ।

ନୟନ ଲୋତକ   ନୟନେ ଶୁଖାଇ
ଯାପିଲେ ଦିବସ- ସୋଦର ପ୍ରେମେ
ଜଗନ୍ନାଥ ପଦେ   ଶିଶୁ-ଶାବକର
ଆତ୍ମା-ସଦ୍‌ଗତି ମନାସି ମନେ ।



# ମଧୁବନ ଦେବତୀ

ନାଆ ହରିପୁର ଗାଆଁଟି ସୁନ୍ଦର
ତିନି କୋଡ଼ି କୋଶେ ତାକୁ
ଧନ ଜନ ଶୋଭା ସମ୍ପଦେ କାହିଁ ଲୋ
କି ଉପମା ଦେବା ତାକୁ ?

ଦି' କୋଡ଼ି ଘର ସେ ଦି'କୋଡ଼ି ଉଆସ
କହନ୍ତି ବାଟୋଇ ଜନେ
ଦୋଖୀ ଶୋଷୀ କେବେ ଫେରିଯାଆନ୍ତି ଲୋ
ଶୁଣିନାହିଁ କେହୁ କାନେ ।

ହସରୋଳେ ପୁର ଫାଟି ପଡୁଥାଏ
ବାଳକ ବାଳିକା ମେଳେ
ପଦ୍ମ ପୋଖରୀରେ ପଦ୍ମ ଫୁଟେ ପୁଣି
ସକାଳ ଗାଧୁଆବେଳେ ।

ଗାଁ କୁଳବୋହୂ କୁଳ-ଲକ୍ଷ୍ମୀକୁଳ
ହଂସ କଉତୁକ ଭରେ
ଫୁଲ ତୋଳି ଫୁଲ ଫୁଟାଉଥାନ୍ତି ଲୋ
ନିତି କେତେ ନଈକୂଳେ ।

ଭେଣ୍ଡାଏ ମଣ୍ଡନ୍ତି ଦାଣ୍ଡପିଣ୍ଡା ଯେବେ
ଦେଖି ସେ ସୁଢଳ ଠାଣି,
ମନେହୁଏ ଅବା ପାଣ୍ଡବ ଭାଇ ଲୋ
ବିହାର କରନ୍ତି ପୁଣି ।

କ୍ଷେତ-ଲକ୍ଷ୍ମୀ ଯେବେ ଫେରନ୍ତ ସେ ଘରେ
ଶୁଭେ ହୁଳହୁଳି ରବ
ଓଡ଼ିଶା ମୁଲକେ ଏଭଳି ଗାଆଁ ଲୋ
ଶହକେ ଗୋଟିଏ ଥିବ ।

ଗାଆଁ ମକଦ୍ଦମ ରଘୁ ଗାଈଗୁରୁ
ଗାଆଁକୁ ଜଣେ ସେ ଖାଲି
ଛଅ ପୁଅ ଛଅ ବୋହୂ ଧରି ସେ ଲୋ
ଥିଲେ କେବେ ଘରକରି ।

ଫାଟିପଡୁଥିଲା ଧାନର ଖମାର;
ଗୁହାଳେ ଗୋଧନ କୁଳ,
ଢାଳଦେଉଥିଲେ ସୁରଭି ପରାଏ
ନିତ ନିତ କ୍ଷୀର ଧାର ।

କହିଲେ କି ହେବ; ହେଲେ ସବୁ ଥିଲା,
ଘରର ଘରଣୀ ବୁଢ଼ୀ
ଖରା ଉଠୁଁ ଖରା ବୁଡ଼ିବା ଯାଏଁ ଲୋ
କରୁଥିଲା ଦାନ୍ତ ରଡ଼ି ।

ଛଅ ବୋହୂ ଭୁଲେ ସେ ଘର ଦୁଲଣୀ
ବୁଢ଼ୀର ଏକଇ ଝିଅ,
ସତର ବରଷେ ବିଧବା ହୋଇ ସେ
କାନ୍ଦରେ ପୋଛଇ ଲୁହ ।

ବୋହୂଙ୍କ ଉପରେ ବୁଢ଼ୀର ଭର୍ତ୍ସନା
କିଏ ସେ ପାରିବ ଲେଖି
ସବୁ ସହୁଥାନ୍ତି ଛଅ ବୋହୂ ଯାକ
ମୁହଁକୁ ତଳକୁ ରଖି ।

ଦୁଲଣୀ ଝିଅ ସେ        ବାଘୁଣୀ ପରିଏ
ପଦକେ ପଦକେ ହାଣେ
ବୋଉ ପଛ ଧରି        ବୋହୂକୁ ଯେତେ ସେ
ପୀଡ଼ଇ କିଏ ତା ଜାଣେ ?

ଜଳନ୍ତା ଚୂଲିରେ        ବରାଡ଼ ପୂରାଇ
ବୋହୂ ନାଏଁ ଦିଏ ବୋଳି
ବୁଢ଼ୀ ଘଟେ ଭରି        ଅଣ୍ଡୁଆ ବାଳ ଲେ
ଭୂଷାରେ ଉଠାଏ କଳି ।

ତେଲ ଲଡ଼ ନଜେ        କାନ୍ଦ କହେ, ବୋଉ
ସାରଦେଲା ସାନ ବୋହୂ
କାଲି ପରି ଏଇ        ପୋଡ଼ାମୁହାଁ ଟା ଲେ
ଢାଳିଲା ଅଡ଼ାକ ମହୁ ।

ଓଳଆ ଘରକୁ        ଅଳଆ କରି ସେ
ଭାଇଙ୍କି ଦେଖାଏ ଡାକି
ତିଅଣେ ପକାଇ        ଲୁଣ ମୁଠା ମୁଠା
ମୁହଁକୁ ବଙ୍କାଏ ଚାଖି ।

ନଡ ଲୁଗା ଚିରି        କଳି ସେ ଲଗାଏ
ଏ ନାଆଁ ସେ ନାଆଁ ଧରି
ଗାଈଗୁରୁ ଘରେ        ଦିନେ ନଅ ଥର
ଲାଗୁଥାଏ ଖାଲି କଳି ।

ଦିନେ ହେଲେ ବୁଢ଼ୀ        କହଇ ନାହିଁ ତ
ଝିଅର ଦୁର୍ଗୁଣମାନ,
ବୋହୂକୁ ଧିକାରି        ବୋହୂ ବାପଘରେ
ବରଷଇ ଗାଳି ବାଣ ।

ସେ କଥା ଶୁଣିଲେ ପଥର ତରଳେ,
ଛାଡିଲା ଖଡ଼କା ଧରି
ଝିଅ ଲୁଚିଦେଇ ଅପଣା ପିଠିରେ
ଆପଣେ ପକାଏ ଢ଼ରି ।

ନଜେ ଝୁଣ୍ଟି ପଡ଼ି ପରେ ସେ ଉଡ଼ାଏ
ଉଠି କହେ କାନ୍ଦି କାନ୍ଦି—
ମଝିଆଁ ବୋହୂର ଏଡ଼କ ରାଗ ଲୋ
ଗୋଡ଼ ମୋର ଦେଲା ଛନ୍ଦି ।

ତିନ ବୋହୂ ଯାକ ତିନ ଲକ୍ଷ୍ମୀ, ସେ ତ
ସବୁ ସହୁଥାନ୍ତି ରହି
କାଳେ ସାନ ବୋହୂ ଲବଣୀ ପିତୁଳୀ
ନ ପାରିଲା ଦୁଃଖ ସହି ।

ଛ' ମାସେ ଶୁଖଇ ନାହିଁ ପୋଡ଼ା ଘାଆ
ମୁଣ୍ଡେ ବାଳ ଭୁରୁ ଭୁରୁ
ନୁଝୁରି ଗାଧୋଇ ଦେହରେ ସତେ କ
ଫୁଟିଥିଲା ଧଳା ଛତୁ ।

ଓଳିଏ ଖାଇ ସେ ଓଳିଏ ଶୁଅଇ
ଆପଣା କପାଳ ଠୁକ
ବର ବୋଲି ଯାର ହାତ ଧରିଥିଲେ
ନ କହେ ଦିନେ ସେ ତାକ ।

ଆଖିରୁ ଶୁଖିଲା ଲୁହ ଧାର ତାର,
ପଥର ହୋଇଗଲା ଛାତି
ଯେତେବେ ହେଲେ ଶାଶୁ ନଣନ୍ଦ ଜାଆଙ୍କୁ
ନସ୍ତାର ମିଳିଲାନାହିଁ ।

ଡାକିଲା କେତେ ସେ ପ୍ରଭୁ ଜଗନ୍ନାଥେ
ଅନ୍ଧାରେ ଉଠାଇ ହାତ
ଗାଁ ବରଗଛ ଠାକୁରେ କଲା ସେ
କେତେମନ୍ତେ ପ୍ରଣିପାତ ।

ପିଲାଟି ଦିନରୁ ନନା ବୋଲି ଥରେ
ଡାକି ସେ ନଥିଲା କେବେ,
ମାଆଙ୍କୁ ସୁମରି ଢାଳିଲା ଲୁହ ସେ
କେହି ନ ଶୁଣିଲେ ଲବେ ।

ଗୁହିଁ ଗୁହିଁ ଝାଇ ନ ଆସିଲା ଘରେ
ବୁଜୁଳା କାନ୍ଧରେ ବୋହି,
ଦୋଳ ପୁନଅଁଠୁଁ ସାବିତ୍ରୀ ଉଆଁସ
ଦେଖୁ ଦେଖୁ ଗଲା ବହି ।

ଆଷାଢ଼ ପଶନ୍ତୁ ବରଷା ଅଇଲା
ଲୁର ଦିଗୁ ମେଘ ଘୋଟି,
ଗାଆଁ ବିଲ ବାଡ଼ି ପାଣି ଉଛୁଳିଲା,
କ୍ଷେତରେ ଶୁଭିଲା ପାଟି ।

ହେଲେ, ସାନ ବୋହୂ ପାଟି ନ ଶୁଭିଲା
ଓଠଟି ନ ଫିଟିଲା ଆଜ,
ଶାଶୂଏ କହନ୍ତି 'ମରିବ ସେଇଠା',
ନଣନ୍ଦ ବୋଲଇ 'ଯାଉ' ।

ସେଦିନ ବରଷା କହି ହେବନାହିଁ,
ମେଘ ବା ପଡ଼ିଲା ଛିଡ଼ି,
ଫାଟିଗଲା ଅବା ଆକାଶ ଛାତି ଲୋ,
ଗରଜିଲା ଘଡ଼ଘଡ଼ି ।

ବିଜୁଳି ମାଇଲା, ପବନ ବହିଲା,
ଅଥିର ହୋଇଲେ ଗଛେ
ହେଲେ ଘଇଗୁରୁ ବାଡ଼ଆଡ଼େ ବସି
ଦେବଷ୍ଠି କେ ଲୁହ ପୋଛେ ?

ବିଜୁଳି ଆଲୁଏ ମୁହଁ ଦଶେ ଫୁଟି,
ଉପରେ ନବେଶି ଆଖି
ଅଳପ ମେଲାଇ କଅଁଳ ଅଧର
ଦେଲା ବା ସେ ଥରେ ଡାକ ।

ସେ ଡାକ ମିଶିଲା ଗଗନ ତଳେ ଲୋ,
ସେ ରୂପ ଲୁଚିଲା କାହିଁ,
ସକାଳେ ପଡ଼ିଲା ହରିପୁର ଗାଆଁ
ଗୋଷ୍ଠାକରେ ହଇଚଇ ।

ବୋହୂ କାହିଁ ଗଲା କହିଲା ନଣନ୍ଦ
'ଏତକ ନିଲଜୀ ସତେ';
ବୁଢ଼ୀ କହେ, ସତେ ମରିବାକୁ ଥିଲା,
ଲୋକହସା କରି ମୋତେ !

ଧାଇରେ ମାଇପେ ମୁହଁକୁ ପୋତିଲେ,
କିଏ ବା ପୋଛିଲା ଲୁହ,
ଜାଣିବା ଲୋକର ମନ କି ରହଇ,
କମିତି ସହ୍ନାଳେ ଦେହ ?

ବେଳ ପହରକୁ ଖବର ରଟିଲା,
ଭାଟକା ହୋଇଲେ ଲୋକେ-
ଘାଇଗୁ ରୁ ଘର ଘାନବୋହୂ ରମା
ଧଉଡ଼ି ହୋଇଛି ବେକେ ।

ମଧୁବନ ଛୋଟା ଗ୍ରାମ ତ ପଡ଼ିଲା
ଲୋକ ଗହଳରେ ଛନ୍ଦି,
'ଅନ୍ଧାର ରାତିରେ କଲା କି ସାହସ',
ଲୋକେ ହେଲେ କୁହାକୁହି ।
ସେ ଦିନୁ ଗଲାଣି କେତେ ଯେ ବରଷ,
କେତେ ଯେ ଗଲେଣି ଲୋକ,
କି ହେବ ଭାଳିଲେ ଗଲା ସେ କାହାଣୀ ?
କଥା ଅଛି କାଳ ଯାକ ।
ହରପୁର ଗାଆଁ ମଧୁବନ ଛୋଟା
ମଝିରେ ମଣ୍ଡପ କରି,
ଗାଆ ମାଇପିଏ ଲିପି ଆସନ୍ତି ଲୋ
ଦେଇ ଏବେ ହୁଳହୁଳି ।
କ୍ଷୀର ଖେଚେଡ଼ିରେ ପୂଜା ଆସୁଛନ୍ତି
ବରଷକେ ବାରଥର,
କହୁଛନ୍ତି; ଏ ଯେ ଗ୍ରାମ ଦେବତା ଲୋ
ଝିଅ ଶାଶୁ ବୋହୂଙ୍କର ।
ଶାଶୁ ପୀଡ଼ାଦେଲେ ଏ ଦିଅଁ ବୁଝନ୍ତି
ଶାଶୁଙ୍କୁ ମାରନ୍ତି ଘାରି,
ନଣନ୍ଦ ଉଚ୍ଛଟ- ପଣିଆ ଦେଖିଲେ
ବେକରେ ବସନ୍ତି ମାଡ଼ି ।
ସେଇ ଦିନୁ ଏବେ ହରପୁର ପରି
ଏତେ ବଡ଼ ଗାଆଁ ଠାରେ,
ଶାଶୁ ନଣନ୍ଦର ପୀଡ଼ା ଆଉ ନାହିଁ
ଜଣେ ତ ବୋହୂ ନ ମରେ ।
ସେହିଦିନୁ ନାଆଁ ପତାକା ଉଡ଼ୁଛି
'ମଧୁବନ ଠାକୁରାଣୀ',
ମଧୁବନ ଦିଅଁ ବୋହୂଏ ପୂଜନ୍ତି,
ପାଆନ୍ତି ସରଗ ପୁଣି ।

# କବିର ଫସଲ

ପ୍ରସ୍ମା କହେ, "ଏ କି      ଲେଖୁଚ କବିତା
ଧ୍ୱଂସ ଗୀତି,
କାଗଜ ଉପରେ      ଚାଲିଲେ କଲମ
କରଛେ ଘାତ !

ଝରିଲେ ବରଷା      ଟପର ଟପର
ଛପର ପରେ,
କାହୁଁ ଝରଝର      ମୁଖରୁ ଚମର
କବିତା ଝରେ ।

ଚଳିଲେ ବିଜୁଳି      ମାଳ ଘନ-ଚଳ
ଅନ୍ଧାର ପଥେ
କଲମ ଚମର      ଚାଲେ ସର ସର
କାଗଜେ ସତେ !

ବସି ଏତେବେଳେ      ନାହିଁକ ବଚନ
କହିବ ପଦେ !
କଟକରୁ ମିଳେ      ଅଳତା ବଜାର
ଦରରୁ ଅଧେ ।

ପତ୍ତର ସୁନାର      ଦର ବଢ଼ିଛିକ,
ଆଣି ନ' ମାଳ ?
ସକାଳୁ ଅନେଇ      ବସିଛି ସେ କଥା
ମନରେ ଭାଳ ।

ରାଜଗୁରୁ ପୁଅ ବ୍ରାହ୍ମଣ କଣିଲା
ଫଗୁଣ ପଶୁ
ବାର ବରଷରେ ରମା କଥା କହେ
ନ ମାନ ଶାଶୁ ।

ଗାଆଁ ଗୋଷ୍ଠୀକରେ ପଡ଼େ ଏତେ କଥା
ସେ କଥା ଛାଡ଼
ପୋଡ଼ିଯାଉ, ଏ ଯେ କଳମ ଚାଲଣି
ଧାଡ଼ିକ ଧାଡ଼ !

ଊଧରିବ ଏ କି ସପତ ପୁରୁଷେ
ନପାରି ଜାଣି,
ନରକେ ପଡ଼ିବେ ବାପେ ବଡ଼ବାପେ
ନ ପାଇ ପାଣି !

ଖଡ଼ା ଗଛଟାଏ ନ ଆସେ ଘରକୁ
ମାସକେ ହେଲେ
ହସି କଥା କହ ପଚାରିଲେ ଖାଲି
ପଦକେ ଗେଲେ ।

ମଲାଯା'ଏ ମୋର ଫଟା କପାଳରେ
ଥିଲା କି ଲେଖା,
ଘରଲୋକ ହେଲା ନାଚ ଗୁଣ୍ଡୁଗୁଣ୍ଡୁ
କାହିଁ'ଛୁ ଦେଖା ?

ଗହଳ ଚହଳ ପଡ଼ୁଛି ଗାଆଁରେ
ଯାଉ ନ ଶୁଣି,
ବଡ଼ ପଦରକୁ ଗଲେଣି ପିଲାଏ
କୋଳଥ ବୁଣି ।

ଜଏ ଗଲା କାହିଁ ରୋଜଗାର କରି
ବିଦେଶ ବାଟେ,
ହାୟରେ ବିଧାତା ! ଏତେ କଥା ଥିଲା
ତମରି ପାଠେ ?

ଏଥୁ କି ମିଳିବ ଲାଭ ପଇସାଏ,
ଲେଖୁଚ ଗୀତ,
ଭୁଛାଟାରେ ମତେ ଡାକୁଚ, ଶୁଣ ଗୋ
ପରାଣ ମିତ !"

କହିଲା, "ଗୋ ମୋର ଶୁଣ ପ୍ରିୟତମେ,
ଶୁଣ ଗୋ ରାଣୀ;
ଯିବେ ଯେତେବେଳେ ଗାଆଁ ପୁରଜନେ
ଫସଲ ଆଣି,

ଏ ମୋର ଗୀତର ପଦେ କି ମୁଖରେ
ଫୁଟିଲେ କା'ର
ହଜାର ବରଷ ଫସଲ ମିଳିବ
ସେ ଦିନ ମୋର !"



# ଚଢୋପୂଳା କୂଳେ

ମିଶିଯାଅ ଲେକ ଲହରେ ଶତ ତରଙ୍ଗ-ମାଳା
ମିଶିଯାଉ ମହାପୁଲନେ ପ୍ରାଣ-ପ୍ରୀତି-ପସରା ।
ମିଶିଯାଉ ଶତ ସଙ୍ଗୀତ ନାଦ ଅନନ୍ତ ନଭ
ଗିରି-ପ୍ରଣୟିନୀ-ବଲ୍ଲରୀ ଶ୍ୟାମ ଶାନ୍ତ ଗରଭ

ନାଚ ଉଠ ଫେନ ସୁହାସେ ସୁର ବିଭବ ରାଜ
ପ୍ରତିବିମ୍ବ ରବି ବାରେ ହେ ନୀର- ମୁକୁରେ ଆଜ ।
ଅବତର ଆସ ସରଗୁଁ ହସି ଅମର-ବାଳା
ଦେଖିବାକୁ ପ୍ରୀତିଭରା ଏ ଶତ ତରଙ୍ଗମାଳା ।

ପ୍ରତିବିମ୍ବ ରବି ନୀରବେ ଲକ୍ଷ-ମୟୂଖ-ମାଳେ
ବାତ-ପ୍ରିୟା-ନୀଳ-କପୋଳ ଚୁମ୍ବିପ୍ରୀତି-ମଧୁରେ ।
ପ୍ରୀତି-ପୁଲକିତ-ପୀୟୂଷ ଆଜ ବହିବ ପରା
ଅତୀତ- କନକ ସମ୍ପଦୁ ଧୋଇ ଏ ଶ୍ୟାମ ଧାରା ।

ସରଗର ଶତ ଆଶିଷ ମର୍ତ୍ତ୍ୟ-ମୋହନ-ଗୀତି
ଏ ଧରା, ସରଗେ ଛନ୍ଦବେ ବହ୍ନି ଯୁଗଳ-ପ୍ରୀତି ।
ପ୍ରାଣର ଗଭୀର ବେଦନା, ଶତ କରୁଣ-ବାଣୀ
ପଲକେ ପଲକେ ଉଠେ ଏ ତାଳେ ତୋଳା ଉଜାଣି ।

ଉଠି ଖେଳେ ଯକ୍ଷ-ବିରହ-ଗୀତି ନିମିଷେ ଆସି
ପ୍ରତି କାଳେ ନବ ନୀରଦ ବେଗେ କରୁଣେ ଭାସି ।
ଭାସିଥିଲା ପରା ଏ ନୀରେ ଦିନେ ବୀର-ରୁଧିର
ମଉଳାଇ ଶତ ତରୁଣୀ ଶୀତ-ତରୁଣାଧର !

ମଉଳାଇ କୋଳ-କଳିକା ଯାର ଅଙ୍ଗନା ସତେ,
ବୁଲି ଏ ପୁଳିନେ ଢାଳିଲେ ଅଶ୍ରୁ ଏ ଖରସ୍ରୋତେ
ପଖାଳିଲେ ଏହି ସଲିଳେ ବଦନେ ଶତ ଯୁଆନ
ରକ୍ତ ଅରୁଣିତ ବସ୍ତ୍ରେ ଗାଇ ଅତୀତ ଗାନ ।

ଗାଇବାର ନୁହେ ସେ ଗୀତି ଆଜ ଦଗଧ ହୃଦେ
ଦେଖିବାର ନୁହେ ସେ ଛବି ଶତ କଳ୍ପନାପଦେ ।
ଫେରିଆସେ କ୍ଷୀଣ-ଧାରଣା ଯାଇ ସେ ଦୂର ଦେଶ
ଝଲକାଇ ଦିଏ ନୟନ ସାମ୍ପ୍ରତିକ ସେ ବେଶ ।

ଯୁଗ ଅଶ୍ରୁ ଧାରା ବନ୍ଧୁ ଗୋ ମନ ଆସଇ ଫେରି
ସେ ଦୂର ଅତୀତ-ଜଳଧି ମହା ପୁଳିନେ ବୁଲି
ଏହି କି ଅନଙ୍ଗ ଧରଣୀ ଏ କି ସେ ତରଙ୍ଗିଣୀ
ଜୟଦେବ କଣ୍ଠେ ଖେଳିଲା ଯହିଁ ବିରହ-ବାଣୀ ।

ଏ କି ସେହି ବନ ଭୂଧର ଯହିଁ ସୁଧା ଅକ୍ଷରେ
ଫୁଟିଲା ଗୌତମ ଚରିତ ଲକ୍ଷ ଶିଳା ବକ୍ଷରେ ।
'ଏ କି ସେହି' କହୁ ନ କହୁ ଘୋଷେ କିଏ ଗମ୍ଭୀରେ
ପ୍ରତାପ ଅନଙ୍ଗ ଧରଣୀ ଦେଖୁଅଛଟି ନରେ ।

ଏ ଯେ ବାଲିକଣା ଭରି ହେ ଏଥି ଗୌରବ ଶତ
ପ୍ରେମିକ-ସନ୍ନ୍ୟାସୀ ଅମୃତ ପଦେ ପୁଣ୍ୟ-ମହତ ।
ଏ ସମୀରେ ନିଶା 'ଶଙ୍କର' କୋଟି ଅଦ୍ୱୈତ ବାଣୀ ।
'ଅଇର' କନକ- ଚରିତ 'ଜୟଦେବ' କାହାଣୀ

ଉଡ଼େ ଯହିଁ ଭୃଙ୍ଗ ମନ୍ଦିରେ ବିଶ୍ୱ ବିଜୟକେତୁ
ନିଯୁତ-ଉରଣେ ଉଳାଇ ମହା ମିଳନ ସେତୁ ।
ହୀନ ନୁହେ ସେହି ଧରଣୀ ମାତ ନୁହେ ସେ ମନ
ନୂଆର ନୁହେ ସେ ଭୂମି ଲୁପ୍ତ ଅଛି ସେ ଧନ ।



# ଅନ୍ତିମ ମେଳଣି

ଗାଅନା ଏ ବନେ ବିହଗ ଥିର ହୁଅ ସମୀର
ଢାଳନାରେ ଶଶି ନଭସୁ ଶୀତ-ଜୋଛନା ଧାର ।
ମୃଦୁ ମନ୍ଦ ବାତ ବିଳାସେ ନାଚନାଗୋ ସରସୀ
ହସ ନା ପ୍ରଶାନ୍ତ-ତାରକା ଯେନ କୁସୁମ ରାଶି ।
ଲେଉଡ଼ି ବୁଲୁଛନ୍ତି ଶିଶୁଏ ପ୍ରାଣ-କୁଂଜ- ପ୍ରସାରେ
ହଜିବାର ମଧୁ-କଳଟି ମର-ପ୍ରୀତି ଉଡ଼ାଳେ ।
ଦେଖିଲୁ ବିଷାଦ-ତାମସେ ମର ଜୀବନ ଖେଳ
ଶୁଣିଲୁ ଜୀବନ-ସଙ୍ଗୀତ ଫେଇ ମରମ-ଦ୍ୱାର ।

ଥିର କି ଜୀବନ ସଂଗୀତ ? କାହିଁ ପ୍ରସରିଯାଏ
ଚପଳା ଚଳନେ କି ମହାବେଗେ ମଧୁ-ଆଗ୍ରହେ ।
ସେ ପଥେ କି ଗଲ ଭାଇ ହେ ! ଯେନ ଶେଷ ମେଳଣି
ବସି ଶୁଣୁଛ କି ପଥେ ସେ ବିଭୁ ପରମ-ବାଣୀ ?
ଦେଖିଲ କି ତହିଁ ଦୂରୁ ସେ ଦୂରେ ନବ ରାଇଜେ
ଅଜଣା-ସୋହାଗ-ସମ୍ପଦ ନବ-ନନ୍ଦନେ ରାଜେ ?
ସେ ବନେ କି ଫୁଟେ କନକ-ଜ୍ୟୋତି ଦିବା ଯାମିନୀ
ଉଚ୍ଛୁଳେ କି ବିଶ୍ୱ ଆଦର ନିତି ଅମୃତ-ବାଣୀ ?

ସେ ଗଗନେ ନାହିଁ ଚପଳା ହାଏ ମୁକତ ଦେଖା ?
ପାଇଥିଲ ଯେବେ ଆଗରୁଁ ଏତେ ସୋହାଗ-ଲେଖା ।
ତେବେ କପାଁ ବସି ରହନ୍ତ ଏ ଯେ ମରୁ ମରତେ
ଏ ପୀରତି କାହିଁ ବହନ୍ତା ତବ ଜୀବନ-ପଥେ ।

ଫେରନାହିଁ କଏ ଯେ ଦେଶୁ, ଫେରିବ ବା କେମନ୍ତେ ?
ଫେରିବା ବାସନା କ ଲାଗି ଆଉ ପୋଷିବୁଁ ଚିତ୍ତେ ।
ବହୁଥିବ ସଦା ହୃଦୟ ତବ ବିଚ୍ଛେଦ-ସ୍ମୃତି
ଶୟନେ, ସପନେ, ବିହାରେ ସଖା-ଶବଦେ ନିତି ।
ଖାଲି ଶୁଣୁଥିବୁ ନିକୁଂଜେ ବସି ପ୍ରାଣ ଜାଗରେ
ସମୀର-ସରତେ ତମର ଶତ ମଧୁର-ସ୍ୱରେ ।
ସରସୀ-ପୁଳନେ, ତଟିନୀ କୂଳେ ବକୁଳ ମୂଳେ
ତମ ସ୍ନେହ ଲୀଳା ବନ୍ଧାଟି ଶତ ହୃଦ-ଦୁଆରେ ।
ବୁଣ୍ଣି ବୁଣ୍ଣି ଶତ ବାଲୁକା, ଦଳ ଚରଣେ ନିତ
ସେ ଦଳନେ ପୁଣି ଦେଖିବୁ ତବ ମୋହନ-ପ୍ରୀତି ।
ଗୁରୁ-ଗଉରବ ଢେଉବା ଶିଶୁ ପରାଣ ଯେତେ
ଖାଲି ହସିବେ ହେ ଲୁଚବେ ପ୍ରୀତି-ଅଜଣା-ପଥେ ।

କୂଳ ଗୃହ ଏ ଯେ କଶୋର-ପ୍ରୀତି ମୋହନ ହାସେ
ମିଶିଯାଏ କ'ବା ଯାତନା-ଶଶି ଆଜ ନିମିଷେ ।
ମାରବେ ପ୍ରିୟଙ୍କୁ ଆକୁଳେ ଶତ ସ୍ମୃତି ଆଦର
ଫାଟିଯାଏ ବୁକୁ ନୟନୁ ପଡ଼େ ଲୋତକ ଝର ।
ଥାଆନ୍ତେ ଜନକ, ଜନମୀ ବନ୍ଧୁ ଥାଆନ୍ତେ ବୁକେ
ମିଶାନ୍ତେ ଜୀବନ କାହାଣୀ ବସି ତମର ପାଖେ ।
ବାଳୁତ ବୟସୁ ଭାଇ ! ସେ ସୁଖ ନଥିଲା କିଛି
ଦେଇଥିଲା ବିହି କପାଳୁ ସବୁ ସୋହାଗ ପୋଛି ।
କାହିଁ ବହି ଦୁଃଖ-ବୁଳବୁଳ ଆସିଥିଲ ମରତେ
କାହା ଶିରେ ଲିହ ଭାଙ୍ଗି ଗଲା ଅଜଣା-ପଥେ ?

ଏ ମରତ ଦାଣ୍ଡେ ବନ୍ଧୁ କି ମହା ଉଦାସୀ-ବେଶ
କାହିଁ ବା ପାଇଲ ମରମେ ଏତେ ପୁଲକ ହାସ ?
ନବୀନ ବୟସୁ ବନ୍ଧୁ ସେ ପୁଣ୍ୟ-ବାସନା ଜ୍ୟୋତି
ଭେଟିଲ ଏ ବନ-ବିହାରେ କେଉଁ ସଂପଦ ଚିନ୍ତି ?
ଫୁଲେ ଫୁଲେ, ଡାଳେ, ପଲ୍ଲବେ ବନ୍ଧୁ ସୋଦର ଭାବ
ଗଢ଼ିଲ ଜୀବନ ମମତା, ଆହା ! କି ଅଭିନବ !
ଦରଫୁଟା ପିତୃ-ଭକତି ଲଭି ପୁଣ୍ୟ ବିକାଶ
ଏ ଭୂମେ, ଏ ମଧୁ ସମୀରେ ଭରି ହେଲା ଉଚ୍ଛ୍ୱାସ ।
ସୋଦର-ସେନେହେ ବୁଲିଚ ଭିକ୍ଷା-ଝୁଲିଟି ଧରି
ଦୁଃଖୀ ସିନା ବୁଝେ ଦୁଃଖୀର ଭାରି ପରାଣ ଭରି ।
କି ମନ୍ତ୍ର ରଖିଲ ଏ ବନେ କେଉଁ ମନ୍ତ୍ରର ବଳେ
ଲୁଚି ନାହିଁ ଯାହା ଲୁଚିବ ନାହିଁ ସମୀରେ ହେଲେ ।

ସେ ବିଭବ ହେଲେ ନିମିଷେ ଆଉ ଥାଆନ୍ତୁ ଲଭି
ଦେଖିଥାନ୍ତୁ ମର୍ତ୍ତ୍ୟ-ଆଲୋକେ ତବ ମୋହନ-ଛବି ।
ନୋହିଲା ସେ ଆଶା ପୂରଣ, ହେଲା ନିକଟତର
ଅନ୍ତିମ-ବିଦାୟ-ପଲକ ଭାଇ ! ବେଳକୁ ବେଳ ।
ଦାରୁଣ ସେ ରୋଗ ବାରତା ଶୁଣି ମରମ ଥରେ
ବାନ୍ଧୁତ ପରାଣ ସହନ୍ତା କି ସେ କଷଣ ଭାରେ ?
ଥିର ହୁଅ ଅଶ୍ରୁ ନିମିଷେ, ଥିର ହୁଅ ଗୋ ଭାଷା
ବିଦେଶ ଏ ଭୂମେ ଦେଖିବ କେତେ ପରାଣ ଆଶା ।
ଦେଖିଚ ତ କେତେ ମିଶିଲା ଏହି ସମୀରେ ଥରେ
'ଭାଗୀରଥି' ଶେଷ ପଲକ ଏହି ତପନ ତଳେ ।
ଏହି କୁଂଜେ 'ସାଧୁ' ଦେଲା ତ ଡାକ ଶେଷ-ପବନ
'ବଂଶୀ' ନାମ କେତେ ଶୁଣିଛ କରି ପଥର ମନ ।
ଆବରି ନୀରବ-ବିକଳେ ସେ ଯେ ଯାତନା ଭାରି
କାହା ଛବି ଆଜ ନାଚୁଚି ଲୁହେ ଭିଜାଇ ଧରି ।

ଆଜ କି ଦେଖିବ ? ଏଇ ଯେ ମିଶି ଗଲାଣି ଭାସି
ପ୍ରଦୋଷ ବାରୁଣୀ-କପୋଳେ ବାଳ-ତପନ ଆସି ।

ଦରଫୁଟା ଫୁଲେ ମିଶାଇ ମରୁ-ଅନଳ-ଜାଳା
ହୃଦୟ-ଗାଙ୍ଗେୟ ଭୂମେ ଏ ଶତ-ସାହାରା-ଭରା ।
ଯାଇରେ ସେ ଶେଷ ନିମିଷ, ଶେଷ ବିଦାୟ ଟିକ
ପରାଣେ ପରାଣେ ଧରିଛୁ ବନ୍ଧୁ କି ଖିମ ଶୋକ !
ରହିଛି ସେ ଭୂମେ ସହସ୍ର ସ୍ମୃତି, ଅତୀତ କଥା
ଛୁଟିବାର ନୁହେ ଜୀବନେ ସେ ଯେ ମରମ ବ୍ୟଥା ।
ଲୁଚିଗଲା ମଧୁ ବଦନ, ଲୁଚିଗଲାଣି ବାଣୀ
ପାଇବେ କି ଶିଶୁ ଆଉ ସେ ଯାଇ ବାହୁଡ଼ି ପୁଣି ।
ଡାଳେ ଡାଳେ ପକ୍ଷୀ ଗାଇବ, କୁଂଜେ ଫୁଟିବ ଫୁଲ
ବସନ୍ତ ବନ୍ଧିବ ନଚାଇ ଶତ ପାଦପ ଶିର ।
ରବି ଶଶି ଦେବେ ମୟୂଖ ଡାଳି ଧରଣୀ ପରେ
ହସିବ କି ଆଉ କଳିଟି ଯାହା ଝଡ଼ିଛି ବାରେ !



# ଶ୍ରାବଣ ଶେଷେ

ଶ୍ୟାମୋଜ୍ଜ୍ୱଳ ଶ୍ରାବଣ ଦିବସେ
ଦୂରତାର ବହୁ ଦୂରୁ          ଦିଗ୍‌ଦେଶ ବିତାନେ
ବାସନାର ଅନ୍ତରାଳେ ଅନନ୍ତ ସ୍ଫୁରଣେ
କାହାର ଆହ୍ୱାନ ଲଭି          ପରାଣ ଯାଏ ଗୋ ଦ୍ରବି
ନାଚେ ସୁପ୍ତ ଧମନୀ ଏ ନିମେଷୁ ନିମେଷେ
ଶ୍ୟାମୋଜ୍ଜ୍ୱଳ ଶ୍ରାବଣ ଦିବସେ । ୧ ।

(ମୁଁ ଯେ) ବସିପଡ଼େ ଅନନ୍ତ ଲୋକନେ
ନୀଳିମାରେ ମିଶିଯାଏ          ବିଶାଳ ଗଗନେ
ଭାସିଯାଏ ବାରିଧାରେ ପ୍ରଶାନ୍ତ ସ୍ଫୁରଣେ ।
ପଡ଼ିଯାଏ ରସାତଳେ          ନିରାଶାର କୋଳାହଳେ
ଭାସେ ଦୂର ଅତୀତ ଏ କ୍ଷୀଣ ବିଲୋକନେ
ବସିପଡ଼େ ଅନନ୍ତ ଲୋକନେ । ୨ ।

ଆସ କବି, ଆସ ଚିତ୍ରକର,
କାବ୍ୟଚିତ୍ରେ ଛନ୍ଦିବାକୁ          ଜଗତ ଜୀବନ
କଳ୍ପନାରେ ଢାଳିବାକୁ ସତ୍ୟତାର ପ୍ରାଣ
ସୁନ୍ଦର ଶିଖର ମାଳେ          କାସାର କହ୍ଲାର ମେଳେ
ଦେଖ ଊର୍ଦ୍ଧ୍ୱେ ନଭସେ ଏ ଚିତ୍ର ମନୋହର
ଆସ କବି, ଆସ ଚିତ୍ରକର । ୩ ।

ଇଚ୍ଛ କି ହେ ଭକ୍ତିର ସଂପଦ ?
ଆସ ଆସ ଭକ୍ତକୁଳ    ଆସ ହେ ବ୍ୟାକୁଳେ
(ଏଠି) ଲୋଡ଼ାନାହିଁ ଫୁଲ ଲୋଡ଼ାନାହିଁ ଭସ୍ମମାନେ
ଉଦାର ହଲୋକେ ବୁଲି,    ଅନନ୍ତ-ପ୍ରତିଜ୍ଞା ଧରି
ଉନ୍ମୁକ୍ତେ ଦେଖିବ ଏଠି ସେ ଅବ୍ୟକ୍ତ ପଦ
ଇଚ୍ଛ କି ହେ ଭକ୍ତିର ସଂପଦ ? । ୪ ।

ବିଳାସୀ ହେ ଆସ ଏଥି ଥରେ
ଗୁଞ୍ଜରିତ ମାଳଞ୍ଚର    ମୋହନ ନିକୁଞ୍ଜେ
ନିତି ବସି ଗାଏ ପକ୍ଷୀ ଭୃଙ୍ଗ ମଧୁଗୁଞ୍ଜେ
ମୁକ୍ତ ଏଥି ବିଳାସର    ଅନନ୍ତ ଅମୃତ-ଧାର
ବହିଯିବ ସେ ଅମୃତ ବିଳାସ-ବିଭୋରେ
ବିଳାସୀ ହେ ଆସ ଏଥି ଥରେ । ୫ ।

ବିଶ୍ୱେ ଖେଳେ ଅନନ୍ତ ବିକାଶ
ମହାପ୍ରାଣ ତାର ଛବି    ଗଗନେ, ପବନେ,
ଭୂଧରେ, ସାଗରେ ହସେ ଚଟିମା-ଜୀବନେ
ଅନନ୍ତ ଉଚ୍ଛ୍ୱାସ ମଦେ    ମିଶିଯାଉ ସେ ସଂପଦେ
ଦେବଙ୍କ ହୃଦୟୁ ଧନ ପ୍ରେମୋଜ୍ଜ୍ୱଳ ହାସ
ବିଶ୍ୱେ ଖେଳେ ଅନନ୍ତ ବିକାଶ । ୬ ।



# ସ୍ୱରାଜ୍ୟ ଦୁଆରେ

ଆଷାଢ଼-ଅଶାନ୍ତ-ଘନେ,    ଶୁଭ୍ର କାଶ-ହାସେ
ମଧୁକୁଂଜ ପୁଲକ ବନ୍ୟାରେ
ଫିଟାଅ କେ ଅଛ ପାଶେ,    ଭୁବନ ତୋରଣ ଆଜ
ପଥିକ ମୁଁ 'ସ୍ୱରାଜ୍ୟ-ଦୁଆରେ'
ପଥଶ୍ରାନ୍ତ ଏ ଚରଣ
ବିକଳ ନୟନ ମନ
ଲକ୍ଷ୍ୟହୀନ ଶତ ପଥେ    ନିରାଶା ଆକୁଳେ,
ପଥିକ ମୁଁ ସ୍ୱରାଜ୍ୟ-ଦୁଆରେ । ୧ ।

ଅଶଙ୍କ-ବୋଧନ ଲଭି    ସରସ୍ୱତୀ-ତୀରେ
କି ସଂପଦ, କି ମଙ୍ଗଳ ମାନେ
ଆବେଗେ ଆଶ୍ୱାସ ମିଶେ    ନିରୁଦ୍ଦେଶ୍ୟ କେଉଁ ଦେଶେ
ହିମଗିରି ବିପୁଳ ଧିଆନେ
ଉଚ୍ଛ୍ୱାସେ ସଂଯମ ଭାସେ
ସ୍ୱର୍ଣ୍ଣସ୍ମୃତି ଅବକାଶେ
ଜୀବନ୍ତ-ଚେତନା ବେଶେ,    ପ୍ରତାପ ଶତୋରେ
ପଥିକ ମୁଁ ସ୍ୱରାଜ୍ୟ-ଦୁଆରେ । ୨ ।

ଆଦ୍ୟ-ବସୁଂଧରା ଉଷା    ଏ ନେତ୍ର ପଲକେ
ଆଦ୍ୟ-ବେଦ ନିସ୍ୱାନ-ଝଂକାରେ
ଆଦ୍ୟ ଫୁଲ-କୁଳେଶ୍ୱରୀ-    ନଳିନୀ ପୁଲକ ଶିରୀ
ଭରିତ ମୋ ଏ ସୁପ୍ତ ଅନ୍ତରେ
ତଟିନୀ-ତରଙ୍ଗ ଲୀଳା
ଆଦ୍ୟ ହାସ, ଆଦ୍ୟ ଖେଳା,

ଉଲ୍ଲସିତ ସ୍ତରେ ସ୍ତରେ          ସପନ-ଜାଗରେ
ପଥିକ ମୁ ସ୍ୱରାଜ୍ୟ ଦୁଆରେ । ୩ ।

ଆସ ବିଶ୍ୱକବି, ଆସ          କାବ୍ୟମୟ-ପ୍ରାଣ
ଆସ ଆହେ ଅନନ୍ତ ବିଳାସୀ
ଶିବ-ଶାନ୍ତ ଦେଶେ ଦେଖ,   ଅଶାନ୍ତ, ରକ୍ତ, ଲୋଚକ
ଯଅ ଥରେ ପରାଣ ପରଶି ।
ଆସ ଯୁବା ଭବମୟ
ଆସ ବୃଦ୍ଧ ଶିଶୁ ସହ
ଏ ତାଡ଼ନା, ଏ ଅଘାତ          ନିତ୍ୟ ଅନୁକୂଳେ
ପଥିକ ମୁ ସ୍ୱରାଜ୍ୟ ଦୁଆରେ । ୪ ।

ଫିଟାଅ ଫିଟାଅ ଆଜ          ଫିଟାଅ ତୋରଣ
ପୂରୁ ବିଶ୍ୱ ଓଁ କାର ଶବଦେ
ଶୁଣିବେ ଅନନ୍ତ-ପଥେ          ରବି, ଚନ୍ଦ୍ର, ଗ୍ରହ ଯେତେ
ସାରା ବିଶ୍ୱ 'ସ୍ୱରାଜ୍ୟ' ସ୍ତବଧେ
ଫାଟିବରେ ପାପ-ହ୍ରଦ
ଅବିଶ୍ୱାସ, ଆତ୍ମ ମଦ
ବିଳାସ-ବିହାର ଯିବ          ଲିଭି ନଭଃସ୍ଥଳେ
ପଥିକ ମୁଁ ସ୍ୱରାଜ୍ୟ ଦୁଆରେ । ୫ ।

ଲକ୍ଷଯୁଗ ଶେଷେ ଆଜ          ବୁଲି ବହୁ ଦେଶ
ଶତ ଶତ ପ୍ରାଣ-ଲୀଳା ଭୂମି,
ଅଧ୍ୟାତ୍ମ-ଜଗତେ ଭେଦ          ନିତ୍ୟ ଅବହେଳେ
ଶାନ୍ତିହୀନ ଜଘନ୍ୟ-ଗୋଲମି,
ଫେରୁଚି ପଥିକ ଦୂରେ
ଅଘାତ ଅମୃତ ପୁରେ
ପୂଜିବ ଜନନୀ ପଦ          ନିରଳସଭରେ
ପଥିକ ମୁଁ ସ୍ୱରାଜ୍ୟ-ଦୁଆରେ । ୬ ।

## ସଂକୀର୍ତ୍ତନ

ଭାରତ ହେ
ବୈଦିକ ବିଭବ କର୍ମ-ବଶେ;
ମଞ୍ଜୁଳ-ମୁକୁଳିତ କୁଞ୍ଜ ଭବନ ଶତ
ନାଚିବ ଭଗବନ୍ତ ତବ ପରଶେ । ଧ୍ରୁବ ।

ଗାଙ୍ଗ-ସଲିଳ-ସିତ ପାବନ ଦେଶ
ଏହି ବିଭବମୟ-ଆର୍ଯ୍ୟ ନିବାସ
ଆର୍ଯ୍ୟ ମହତ ଶିକ୍ଷ ତୁଙ୍ଗ ଭୂଧରଗିରି
ବିସ୍ମୃତ ଗଉରବ ଚିର ବିକଶେ । ୧ ।

ସିନ୍ଧୁ ସରିତକୂଳ ପ୍ରେମ ବିଳାସରେ
ପୁଲକିତ ଚଂଚଳ ମୋହନ ଧାରେ
ଉପଗତ ଚଞ୍ଚଳ ମଧୁ ମଳୟାନିଳ
ଅପଗତ ଭାରତ ତାମସ ହେ । ୨ ।

ପ୍ରେମ ମହତ ଶତ ମୋହନ ଗାନ,
ବିଶ୍ରୁତ ବୈଭବ ବେଦ ବିଧାନ
ଆବାହନ ତବ ବିକଶିବ ଅଭିନବ,
ଉଲ୍ଲସି ଉଠୁ ଶିଶୁ ନବ ବରଷେ । ୩।

ମନ୍ଦ-ମଧୁର-ମଧୁ-ମରୁତ-ତରଙ୍ଗେ
କୁଞ୍ଜ-କୁସୁମ-କୁଳ କୋମଳ-ଅଙ୍ଗେ
ସିଂଧୁ ଲହରୀ ପୂରି ନୀଳ ଗଗନ ଭରି
ଗାନ ଉଠଇ ତବ ନବ ହରଷେ । ୪ ।

ଭାଜିବ ଶିଶୁକୁଳ ଜଡ଼ତା ବନ୍ଧ,
ବିକଶିବ ସୁସରଳ କର୍ମ-ପ୍ରବନ୍ଧ
(ଆଜି) ପ୍ରେରଣା ଲଭି ସଖି                ଭାରତ ଶିଶୁମନ୍ତ
ବିକଶିବ ଭାରତ ବିଭବ ରସେ । ୫ ।

ବିଶ୍ୱ ମହତ ଗୁରୁ ବୈଦିକ ମନ୍ତ୍ରେ
ବନଗିରି ବିତାନତ ସୁଲଳିତ ମନ୍ତ୍ରେ,
ବିଶ୍ୱ ଉଠିବ ହସି                ଶ୍ରୌତ କରମ ରସି
ନବ ଲଗନେ ତବ ମଧୁ ପରଶେ । ୬ ।



# ଅର୍ଚ୍ଚନା

ସେହି ତରୁତଳ ସେହି ମନ୍ଦିର ସେହି ଘର
ବିଜଡ଼ିତ ଶତ ସ୍ମୃତି ଯହିଁ ଶତ ଦିବସର ।
ସେହି ସୁବିମଳ ପଲ୍ଲୀ ଧରଣୀ କୋଳେ ଆଜ
ଗୁରୁ ଗମ୍ଭୀରେ ବେଦନା ରାଗିଣୀ ଉଠେ ବାଜ ।

ସବୁ କି ବରଜି ଗଲ ହେ ଦେବତା ଦେବପୁରେ
ତୁମର ପାଇଁ କି ଦୂର ଜଳଧର ଝୁରି ମରେ ।
ତୁମର ଜୀବନ ସମ୍ପଦ ଶିରି ପଛେ ରହି
ତରୁଣ ମନ ମୋ ଉଠେ ଉଦ୍‌ବେଳ କାହା ପାଇଁ ?

ସେ ଚରଣ ତଳେ ଦିବସ ରଜନୀ ଗଲା ପାହି
ସେ ଜୀବନ ମଧୁ କେତେ ଏ ମରମେ ପାଇ ନାହିଁ !
ହେ ମୋର ଦେବତା, ସବୁ କି ପାସୋରି ଗଲ ସତେ
ଶେଷ ଦର୍ଶନ ହେଲା ନାହିଁ ଆଜି ଏ ମରତେ ?

ତୁଟି ନାହିଁ ପରା ଦୁଃଖ ଦୁର୍ଦ୍ଦଶା ଧରଣୀର
ଛାରଖାର ପ୍ରିୟ ପଲ୍ଲୀ ଭୁବନ ଛାରଖାର ।
ଦେବ ମନ୍ଦିର ସନ୍ଧ୍ୟା ଆଳତି ନାହିଁ ଜଳେ
ଡାକେ ଅନାଥିନୀ 'ରକ୍ଷା କେ କର' ହାହାକାରେ ।

ସ୍ୱର୍ଗପୁର ଏ ନରକରେ ଆଜ ପଡ଼େ ଖସି
ମର୍ତ୍ତ୍ୟବାସୀ ଏ ଦୁଃଖୀ ଜନତା ଦେଖେ ବସି
ଦୂରେ ଥାଇ ଦେବ ଶୁଭାଶିଷ ତବ ଦେବ ବାରେ
ଏହି ତରୁ ତଳ—ଏହି ମନ୍ଦିର—ଏହି ଘରେ ?

ତୁମରି ସୁନ୍ଦର ମନ୍ଦିର ମୁଁ ହେ, ମନ୍ଦିର
ମନ୍ଦିରେ ଦେବ ବିଜେ କର ଆସି ଅବିରଳ ।
ତୁମରି ପଲ୍ଲୀ ସ୍ନେହ ସମ୍ପଦ ଉପସ୍ଥିରେ
ଅର୍ଚ୍ଚନା ତବ ଘେନ ହେ ଦେବତା ଘେନ ବାରେ।



# ଆସିବ ପରା

ବେଳ ଯେ ଆସିବା ହେଲା ସତେ,
ଫୁଲ ଫୁଟେ ବନ ପଥେ ପଥେ;
ତାସ କି କହିବ କଥା ତାର ?
ଥରେ ଲୁଚି ଥରେ ଘନ ରଥେ ?

ଦେଲା ଯା ପ୍ରଥମ ପରଶରେ
ଭରି ଏ ଜୀବନ କଳସରେ
ଅଧର ସୁଧାର ଧାରା ଧାର
ଭୁଲିବ କି ଭଲ କହ ଥରେ ?

ସେଇ ଗୀତି ରବ କଳ କଳ
ନଦୀ ଜଳେ କରେ ଛଳ ଛଳ ।
ଏ ତରୁ ଶାଖାରେ ପିକ ବୁକେ
ଯୁଗ ଯୁଗ ହେବ ଢଳ ଢଳ !

ଖୋଜୁଥାଏ ମୁହିଁ ଥିର ଥିର;
ଫୁଲ ବୁକେ ମହୁମାଛି ପରି
ଶୋଇଛି ଏ ତଳ ବାଲୁକାରେ
ସ୍ୱପନେ ସପନେ ସଞ୍ଚରି ।

ନାମଟି ତାହାର—ନାହିଁ—ନାହିଁ—
ପ୍ରାଣେ ଗାନେ ମୋର ମିଶିଥାଇ
ପରଣ କୁସୁମ ତାହା ଆଣେ,
ଝରନ ଝରନ ମଧୁ ବରଷଇ !

ସେ ଯେ ଧରିଥିଲା ଏଇ କର,
ବଂଶୀ ତାହାର ପୀରନ୍ତର
ଏ ନୀପ ମୂଳରେ ଥିଲା ବାଜ
ଆସିବ ପର ସେ ଆସୁ ମୋର ।



# ବିରହୀ କୋକିଳ

ମଧୁର ମଳୟ ମନ୍ଥର ସମୀର
ବନସ୍ପତି-ଗୁଚ୍ଛ-ଶ୍ୟାମଳ ସଂଭାର
ନିସର୍ଗ ମାଧୁରୀ ମେଳେ
କିପାଁ ଆଜ ପିକ ଏକାକୀ ନିର୍ଜନେ
ଡାଂକୁ ଅବିରଳ ଆକୁଳ ପରାଣେ
ବସି ଶୁଷ୍କ ଚୂତ ଡାଳେ ।

ବାସନ୍ତୀ ସୁଷମା ଖେଳଇ କାନନେ
ଧରି ବୃନ୍ତେ ଆଜ ସୁମନ ନୟନେ
ନବୀନ ଭୂଷଣେ ସାଜି
କିମ୍ବା ଯେତେ ତେବେ ସେ ସଂପଦ ରାଜି
ଆସିଅଛି ଆଜ ସେ ସକଳ ତେଜି
କିଅବା ଯାଇଛି ଦ୍ୱିଜ ?

ନବୀନ ପଲ୍ଲବ ଗୁଚ୍ଛ ପାଟଳତା
ଶ୍ୟାମ କାନନର ସୁନୁ ସୁନୁ ଗାଥା
ଦେଖୁ ନାହିଁ କିମ୍ବା ପରାଣେ
ତେଜି ଦେଇ ଯେତେ ସଉଭାଗ୍ୟ ସୁଖ
କିବା ରଖି ହୃଦେ ଜୀବନର ଲକ୍ଷ୍ୟ
ଭରୁଛୁ ବିଷାଦ ଗାନେ ।

ଏ ଯେ ଚୂତବଣୀ ଶୁଖିଲା ଆକୁଳେ
ଯୋଡ଼ ଦେଇ ଯେତେ ସୁଷମା ସମ୍ଭାରେ
ଜାଣୁଥିବ କିରେ ଭଳେ ?
ଯେତେ ତୋର ଏଥି ନିରସା ରାଗିଣୀ
ନିଜନ ଧିଆନ ବିଷାଦ ଘାଳେଣି
ଅନ୍ତର ବିଷମ ଭରେ ।

ବିଷାଦ ନୟନ ଅବିରଳ ଧାର
ଅନ୍ତର ବେଦନା ନିରମମ ଗାର
ହେବ ନାହିଁ କିରେ ଲୟ
ମୃତ ଚୂତ ଶାଖେ ବସି ନିତ ଏଥି
ଗାଉଥିବୁ କିରେ ତୋ ବିଷାଦ ଗୀତ
ହୃଦ କରି ଦୁଃଖମୟ ।

ସ୍ମୃତି ତାମସୀ କି ତାଳିଛୁ ନୟନେ
ଆନ ଗୁରୁ ଛବି ନ ପଡ଼େ ଦର୍ଶନେ
ତା' ରୂପ ଦେଖୁଛୁ ନିରତେ
ସମୀର ଲହରେ ଆସୁଛୁ କି ଭଳି
ତୋତେ ତୋର ପୂର୍ବ ମଧୁର କାକଳି
ଜୀବନ କାଟୁଛୁ ଭାଳିତେ ।

କେତେ ମଧୁମାସ କାଟିଛୁ କୋକିଳ
କେତେ ଦିନୁ ଅବା ରଖିଥିଲୁ ତୋର
ଏ ତୋର ଅଚ୍ଛେଦ୍ୟ ପୀରତି
ସୁନ୍ଦର ନ ଦିଶେ ତା ବିନେ ସଂସାର
ବସନ୍ତ ହୋଇଛୁ ନିରସ ଶିଶିର
ମରି ଦିଶେ ବନସ୍ପତି ।

ଆଜ ଯେ ବସିଣ ନିସ୍ଵନେ ଏକଲା
ସରଗ ସଂସାର ଲବେ ଦୂର କର
ଦେଖନ୍ତୁ ଏ ଜଡ଼ ଶରୀର
ବିରହ-ସଙ୍ଗୀତେ ଭରଏ କାନନ
ବିଷାଦ-ବଦନେ ବାର ଅନୁକ୍ଷଣ
ଢାଳୁଅଛୁ ଅବିରଳ ।

ଏ ଯେ ନେତ୍ର ଧାର ପଡୁଅଛୁ ଢଳ
ଶୁଷ୍କ ତରୁ ଗୋଟି ନିରତେ ପଖାଳ
ତୋ ବିଷମ ଭାବ ବହ୍ନି
ପ୍ରୀତି- ସମାଧିରେ ସ୍ମୃତି ତୁଳସୀଟି
ତୋ’ ହୃଦୟେ ଆଣି ରୋପିବ ଲେଉଟି
ତୋ ଦୁଃଖ ଯାତନା ଧୋଇ ।

ସେହିଟି ତୋହର ଜୀବନର ଧନ
ସେ ସ୍ମୃତିଟି ତୋର ଚିର ଲକ୍ଷ୍ୟ ସ୍ଥାନ
( ଯହିଁ ) ମଧୁ ଅନ୍ତିମ ଜୀବନ
ନବ ରାଗେ ପୁଣି ଦେଖି ନବ ଜ୍ୟୋତି
ତୋ ନୟନେ ଆସି ଦଶିବ ବଶତି
ଦେଇ ଶାନ୍ତି ଚିରନ୍ତନ ।



# ଯୌବନ

ଲକ୍ଷ ଯୁଗର ଅମର ଯାତ୍ରୀ ଯୌବନ ହେ,
ସୁନ୍ଦର ତୁମେ ଚିର ଉଦ୍ଦାମ ଉନମନ ହେ,
ଲକ୍ଷ୍ୟ ତୁମର କି ଦୂର ଦେଶେ
କିବା ପାରାବାର ତରିବା ଆଶେ
କାହିଁ ହିମାଚଳ ମନ୍ଦ୍ରମୋଜ୍ଜ୍ୱଳ ଅଳକେ ହସି
ବିଜୟୋତ୍ସବ ରଚିବ ହସି ?

ସଚପଳ ତୁମ ପଲକ ମାନେ ଯୌବନ ହେ,
ହସି ଉଠେ ମଧୁ ଫୁଲକୁସୁମେ ଗିରିବନ ଏ,
ବାଜେ ବୀଣା ତବ ଚପଳାଲୋକେ
ଚିର ଚଞ୍ଚଳ ବୃନ୍ତ ପୁଲକେ,
ହୃଦମନ୍ଦିରେ ଗମ୍ଭୀର ତୁମ ମୂରତି ଦେଖି
ବିଶ୍ୱ-ଜୀବନ ପଡ଼େ ଚମକି ।

ମନ୍ଦ ମଧୁର ଲଳିତ ଲସ୍ୟେ ଯୌବନ ହେ,
କାନ୍ତ କୋମଳ କୈଶୋର କର ଛନଛନ ହେ,
କି ମହାମନ୍ତ୍ର ସଂଗୋପନେ
ଉଚ୍ଛ୍ୱାସି ଖେଳେ ମର ଜୀବନେ
କି ମହାଡ଼ଙ୍କା ବଜାଅ ବସିହେ ଜୀବନ ପଥେ
ନିତ୍ୟ ପୁଲକେ, ମୁଗ୍ଧଚିତେ ।

ଚୁମ୍ବନ ମଧୁ ପୂର୍ଣ୍ଣ ପରଶେ ଯୌବନ ହେ,
ବିପ୍ଳବ ଗଢ଼ ଜୀବନେ, ଜୀବନେ ଘନ ଘନ ହେ
ବନ୍ଧନ ବାଧା ଛିନ୍ନ କରି
ବିଶ୍ୱେ ନଚୁଅ ପାଗଲ ସରି
ଦୁର୍ବଳ ମନ ନାଚି ବୁଲେ ଦୂର ଦୁର୍ଦ୍ଦିନେ ହେ,
ନାଚେ ଧୂମକେତୁ ମନେ ମନେ ଏ ।

ଫାଲ୍‌ଗୁନ ବନେ ଫୁଲ ସୌରଭେ ଯୌବନ ହେ,
ରୁକ୍ଷ, ଶୀତଳ ପଳିତ ନୟନ ଅଞ୍ଜନ ହେ,
କହ ବ୍ରଜବନ ବଂଶୀ ବ୍ୟଥା,
ବିରହ ବଧୂର ଗୋପନ କଥା
ତୁମରି ଦୁଆରେ ତରୁଣ ତରୁଣୀ ଭିକ୍ଷାମାଗି
ରତ ଅବିରତ ଯାଚନା ଲାଗି ।

ମୁକ୍ତ କାମନା ଧରି ତୁମ ପାଣ୍ଡଶ ଯୌବନ ହେ
ଭକ୍ତ ବିଭୋରେ ଅର୍ପଣ କରେ ଦେହ ମନ ଏ
ଖେଳାଇ କପୋଳେ ରକ୍ତଶିଖା
କରେ ଦିଅ ହସି ବଂଶୀ ରେଖା
ପୃଷ୍ଠ ପଟଗ ପାଖେ ପାଖେ ରଚ ହଳାହଳ ସେ—
ଦିଅ, ଗଢ଼, ମୋତେ ତୁମରି ବେଶେ ।

ରଚନା କାଳ—୧୯୨୪

# କଳଙ୍କିନୀ

ଥୋଇ ମୋ କରେ କୋମଳ କରତଳ
କଳଙ୍କିନୀ ରହିଲୁ ମଥା ପୋତି
ଢାଳି ମୋ ଯୁଗ ଚରଣେ ଅଶ୍ରୁଜଳ
ରଚିଲୁ ଅବା ଲକ୍ଷ ଶତ ମୋତି ।
କବରୀ ତାର କୋହଳେ ପଡ଼ି ଫିଟି
ଧରଣୀ ତଳଚୁମ୍ବୁଥିଲୁ ଫୁଲ
ବେଦନା ତାର ଶତ୍ରୁ ପଥେ ଫୁଟି
ଅଧର ସୀମା କରିଲୁ ଥର ଥର ।
ବଚନ ଯାହା ପ୍ରକାଶେ ଅପାରଗ
ନୀରବ ତାର ଗୃହାଣୀ ଦେଲୁ କହି
ଅଧର ତଳ ନବୀଢ଼ ଅନୁରାଗ
ମୁଦିତ ଶିଶୁ-କମଳ ସମ ରହି ।

ତରୁଣ ମୋର ମରମ ବାତାୟନେ
କ୍ଷଣକେ ଲୁଚି କ୍ଷଣକେ ଦେଲୁ ଦେଖା
ସହସା ତାର ମତ୍ତ ସ୍ୱପ୍ନେ
ବହିଲୁ କିବା ମଦିର-ମୋହ-ଲେଖା
କଣ୍ଟକିତ ବାହୁ-ବ୍ରତତୀ ତାର
ବନ୍ଦନା କି କରିଲୁ ସୁଗୁଞ୍ଜନେ
ମରମେ କିବା ତୀବ୍ର ହାହାକାର
ବିଧାତାର ସୃଷ୍ଟି ନାହିଁ ମାନେ ।
ବିକଟ ବୁଜୁ, ଲଳିତ ଲୀଳା ଭଲେ
ବ୍ୟର୍ଥ ଆଶା କରିଚି ପକ୍ଷପାତ
ସଗୌରବେ ଧରିଲି ତାର କରେ
କଳଙ୍କିନୀ କପାଳେ ଦିଲି ହାତ ।

ଏକଇ କାର ଚୁମ୍ବନ ପରଶେ
ବାରେକ କାର ଅଧର ପ୍ରତିଦାନେ
ଥରେ ବା କାର ମରମ ମଧୁ ରସେ
ପ୍ରାଣ ସାଗର ଥରିଲା ଅନୁକ୍ଷଣେ ।
କାହାର ନବ ଦୃପ୍ତ ବାହୁ ତଳେ
କାହା ବିଶାଳ ବକ୍ଷତଳୁ ଗଲା
କଳଙ୍କିନୀ ଲଗିଲା ମୋର ପୁରେ
କ୍ଷୁଦ୍ର ଚିତ୍ତ ତଡ଼ିଲେ ଅବହେଳା !

ଧଇଲି କର; କହିଲି— କଳଙ୍କିନୀ !
କହ ଗୋ ଥରେ ଗୋପନ ତୋର କଥା
ହୁଅଗୋ ପଛେ କଳଙ୍କମାଳିନୀ
ଥାଉ ଗୋ ତବ ପଛରେ ଆବିଳତା
ଏଇ ଜୀବନ ମରଣ ଦୁଇ ତଟେ—
ମଝିରେ କେତେ ଶର୍ବରୀ ଦିବସ—
ଲଗିଲି ଯେବେ ଆସି ଏ ହୃଦ-ତଟେ
ଆଦର ନେବ ତୁମରେ ଅହର୍ନିଶ ।

ହସି ଗୋ ଯେବେ ଚଳିବ ସ୍ରୋତେ ପୁଣି
ଭିଡ଼ିବ ନାହିଁ ନିବିଡ଼ ଆଲିଙ୍ଗନେ
ଦେବି ଗୋ ଖୋଲି ହୃଦୟେ ଦେବି ବୁଣି
ଜୀବନ ଗୀତ ଅକଳଙ୍କ ଗାନେ ।
ଅଧର ତବ କରିବ ସୁଧାମୟ
ତପନ ବିଧୁ ସାକ୍ଷୀରହିଥିବେ
କହ ଗୋ କହ, କଳଙ୍କିନୀ ! କହ,
ଆସିଛ ଯେବେ ହସି ଗୋ ଏଇ ଭବେ ।



# ଚଉରା ମୂଳେ

ରଜନୀ ଗୋ ଆଜ    କଥା କହିବାରେ
ସଜନୀ ସରି
କଏ ଗଲା ଏଇ    ଚଉରା ମୂଳେ ଏ
ପ୍ରଦୀପ ଜାଳି
ଏ ଘନ ତମିରେ ବେଦନା ଭରି ।

ଏଇ ଗଲା ପଥେ,    ପଡ଼ିଛି ତାହାର
ଚରଣ ଦାଗ
ଲଭିନ ଏ ଦୀପ,    ଲଭିନ ସେ ତାର
କି ଅନୁରାଗ
ଏକ ଦେଲା ବୁଣି ପ୍ରୀତି ପରାଗ !

କର ଥରୁଥିଲା,    ଦୀପ ସେ ଥରିଲା
ଥରିଲା ତନୁ
ଖସି ପଡୁଥିଲା    ଶିଥିଳ ବସନ
ସେ ଅପଘନୁ
ବାଣ କି ଝରିଲା ନତ ନୟନୁ ?

ଦୂର ନଭମାଳ    ପ୍ରାଙ୍ଗଣ ଭେଦି
ଉଠିଲେ ଗୀତ
ଏ କୁଟୀର ତଳେ    ଜଳେ କି ଏଡ଼ାଳି
ପୀରତିବନ୍ତା
ବୁକୁ ଚପି ଧରେ ତରୁଣୀ-ସତ୍ତା

ରଜନୀ ଗୋ, ଏ ଯେ ସଜନି କାହାର
ମୁକୁଳା କର—
ଘଂଜନି ସପନ,— ଯଉବନ ନବ
ମଧୁରତର ।
ଦୀପ ଜାଳି ବସେ କି ଉଜାଗର !

ଜାଳେ ଆଜ ଦୀପ, ଜାଳେ ଏ ତରୁଣୀ
ଜାଳେ ଏ ବାଳା,
ଜାଳେ ଏ କିଶୋରୀ, ଦେଇନି କିଶୋର
କୁସୁମମାଳା
ପଲ୍ଲୀ ଗଗନେ ତରୁଣୀ—ତାରା ।

ରଜନୀ ଗୋ, ଆଜ କଥା କହ ମୋରେ
ତଉଟ୍ଟି ମୂଳେ
ଲୋଡ଼ା ନାହିଁ ମୋର ଲୀଳା ଦେଖିବାକୁ
ସଉଧ ତଳେ
ତରୁଣୀ ମୋ ଲଗୁ ଦରୁଣୀ-କୂଳେ ।

କୂଳେ ବସି ତାର, ସେ ଅପଘନରେ
ଗାଇବ ଗୀତ
କବ ଯା ଗୁଡ଼ଛି ବ୍ରତ ଉପବାସେ
ନବ ଯୁବତୀ
ଫୁଟିବ ଏ ବାଣୀ ଘରେ ତା ପ୍ରୀତି ।

ଖେଳୁ କବକଥା ଲୀଳା ଲୀଳସିମୀ
ଲଳନା ମେଳେ
କବ ନିଶ୍ୱାସ ରଚୁ ଜୟବାନା
ଗୋଲପି ଚେଳେ
ଦୀପ ମୁଁ ଦେଖିବ ତଉଟ୍ଟି ମୂଳେ ।

ଆସ ଗୋ ରଜନୀ ଆସ ଗୋ ସଜନୀ
ତରୁଣୀ କା'ର
ଆସ, ଗଗନ ଧ୍ରୁବ ତାରା ତନ୍ତ୍ର
ସପନ ଭୋଳ
ଏ ଧାନ କବର ମାନସ ଭୋର ।



# ରୂପର ପୂଜା

ତା କର ଚରଣେ ଏ ଯେ ଅକାରଣେ
ଦୂର ପଥଗୃଷ୍ଟ ପରଶ
ସେ ଦୂର ସପନ ମଗନା,
ଡାକନା ହେ ଥରେ, ତା ଅଧା-ପଥରେ
ଛୁଟି ଯିବ ତାର ହରଷ
ସୁକୁମାରୀ ପାଶେ ଲଗନା ।

ଦେଖିଚ ତ କେତେ ଅଖିଳ ଜଗତେ
ଛଳଛଳ ଚଳ-ଲୋଚନ
ଝରି ପଡ଼େ ଲୁବ୍ଧ—ମୂକୁତା;
ଘନ ଅପାଙ୍ଗେ ଚପଳ ରଙ୍ଗେ
କରେ କ ପୀରତି ରଚନ
ସୁକୁମାରୀ ଅନୁରକତା

କେତେ ଯେ ଭଞ୍ଜି— କବତା କୁଞ୍ଜି
ବନେ ଲାବଣ୍ୟବଣ୍ଟୀ ହେ,
ମାଳବିକା ଭୁଲେ ମଳୟେ,
ଭୁଲି ବନ ତଳେ କଣଳପୁ ତୋଳେ,
କେତେ ଯେ ଯକ୍ଷ ସଖୀ ହେ
ସାଜେ କଙ୍କଣ ବଳୟେ ! !

ମାନସ ମୁକୁରେ ପଛେ ରଶ୍ମି ତାରେ
ଆଜ ନରେଖ ଏ ନୟନେ
ପାର ଯେତେ ମନୋରଥେ ହେ,
ତେଣେଇଁ ରୂପ-ସୀମା ଏ ଯେ ଅନୁପମା
ତରୁଣୀ ବାଳା ଶୟନେ
ବୁଣେ ରୂପ ଅବିରତ ହେ ।

କା'ର ପୁରପଥ ଉଜ୍ଜ୍ୱଳେ ବାଳା
କା ଜୀବନ କରେ ମୁଖର
କାର ବନେ ଫୁଲ ତୋଳେ କି ?
କା,ର ଗଳେ ଢ଼ର— କଂକଣ ତାର
ବାଜି କରେ ଗ୍ଲୀତି ପ୍ରଖର,
କହେ କଥା କାରେ ଖୋଲେ କି ?

ଡାକ ନା ହେ ଦୂର— ପଥବୃକ୍ଷ ତାରେ,
ରହ ନିମିଷେକ ଆବର
ଯେନ ଘନ କବ ମିନତି,
ଏ ନୟନେ ତାର ରୂପ ଗଢ଼ିବାର
ଯେତେ ଯେ ଅସ୍ତ ବଧିର
ବନ୍ଦନା ଆଜ କରନ୍ତି !

ଶୁଣିଛ କୋକିଳ— କଣ୍ଠେ ତା ବାଣୀ
ପଦ ଉଷା-ଶରସିଜେ ହେ
ନିରେଖିଛୁ ବନ୍ଧୁ ବାସରେ,
ପରମଳ ତାର କନକ ତନୁର
ବହିଛି ମଳୟ ନିଜେ ହେ
ଫୁଲ-ବନ-ମଧୁ-ସ୍ୱାସରେ ।

ବକୁଳ ତା ଲୋଳ-        ଲୋଚନ ଯୁଗଳ
        ବର୍ଷଣ ମୁଖ ଜଳଦେ
        ଯାଏ ନଭ ତଳେ ଖେଳାଇ;
ଚିକୁର-ନିକର        ଶୈବାଳଦଳ
        ସରସୀ ପୁଳିନେ ସରଜେ
        କମଳ-ବଦନେ ଘେରାଇ ।

ସପନେ ସେ ଦେଖୁ        ପ୍ରିୟ ବନ୍ଧିତ
        ଉପବନ ତରୁ-ତଳପେ
        ଝରେ ଶେଫାଳିକା ବଳପି,
ସପନେ ସେ ଶୁଣୁ        ପ୍ରାଣ-ନନ୍ଦିତ
        ଊଷା-ପିକ ଗୀତ କଳାପେ
        ଯାଏମୁର୍ଚ୍ଛି ତାରେ କଳପି !!

(ପଥଭଷ୍ଟ ଶାସ୍ତିତା କୌଣସି ଏକ ଅପରିଚିତା ଏହି କବିତାର ନାୟିକା)



# ପଲ୍ଲୀ ଦେବତା

ଘନ ବଟ ତଳ ଲୀଳା ବିଳାସିନୀ ଦେବୀ ଗୋ
ଏ ଯେ ପୁରବଧୂ କବୋଷ୍ଣ ଚରଣେ ସେବି ଗୋ
ତବ ମୁକୁଳିତ କଳି ଦେଲେ
ବାଢ଼ି ଚରଣେ
କହି କ ପାରବେ ଇତିହାସ ତାର ମରମେ !

ଯେ ଦିନ ଉଠିଲା ମାପ ବଟ ଚୂତ ବକୁଳ
ଝିଙ୍ଗି ମାଳତୀ ମଲ୍ଲିକା କଲେ ଆକୁଳ,
[illegible]ଣୀର ଏକି ନର୍ତ୍ତନ—
ପଥ ପ୍ରବାସେ
ରହିଲ କେ ଆସି ଏ ପୁର ପଲ୍ଲୀ ଆବାସେ ?

ପଥ ଫିଟାଇଲା ଅପଥେ ଯେ ଲତା ଗହନେ
ବରଣ କରିଲା ତରୁ ମୂଳେ ଜଳ ଚହନେ
ସେ ଦିନ ଜନର ଫୁଲମାଳା
ଆଜ ଅଛୁ କି ?
ତବ ଆସ୍ଥାନୁ ଦେଇ କେ ପାରିବ ବାଛୁ କି ?

ସିନ୍ଦୂରେ ଦେଲା ବୋଳ ଯେ କମ୍ର କବୋଷ୍ଣ
ପାଷାଣି ଗୋ ତାରେ ଦେଇଛ କି ଆଜ ପାଶୋର !
ପ୍ରଥମ ତିଳକ ଦେଲା ତବ—
ଭାଲେ ଯେ କର
ସେ କର ପରଶ ସତ୍ୟ ଯୁଗର ମୁକୁର !

ଚରଣ ଅଳତା ଛାପ ଛାଇ ପଥ ଦୁଆରେ
ଶୁଭ କଙ୍କିଣୀ ବଜାଇଲା ଯେଉଁ ବାହାରେ
ସୁକୋମଳ ମାପ କଲା ତୋଳା
ଦେଲା ଯେ ବାଳୀ
ମନେ ଅଛୁ ସତେ ? ଜାଳ ଯଉବନ-ଧାପାଳୀ !

ଦଶ ବାରଟି ଏ ମାରବ ଦୁଃସ୍ଥ କୁଟୀରେ
ବନ୍ଦନା ଲୀଳା ପ୍ରକଟିଲା ପରିପାଟିରେ ।
ସେ ଦିନ ଲଗ୍ନ ଶୁଭବେଳା
କେବେ ପଡ଼େକ ?
ସେ ଦିନର ଚୁଚି ଶ୍ୟାମ ଡାଳ ଆଉ ଥରେ କ—

ତବ କପାଳରେ, ହେ ମୂକ ଦେବତା କହିବ ?
ପଥଗୃହ ଆଜ ମାନସ-ମୁକୁରୁ ବହିବ ?
ସେ ଦିନର ଛାଇ, ସେ ଦିନର
ଶୋହା ବଇବ
ଦୁଃଖ ହାରଣୀ ନାମ ବହି ମୂକ ରହିବ ?

ଖାଲି ମୁଁ ଦେଖିବି, ଆସୁ ଆଜ ସେହି ଚଉଥି
ଖାଲି ଉଠୁ ତାର ବଦନେ ହାସ୍ୟ ଉଚ୍ଛୁରି
ଖାଲି ଫୁଟୁ ତାର ପଦ ତଳେ
ଶତଦଳ ଗୋ
ବଚନ ତା ହେଉ ଖାଲି ବାରେ କଳ କଳ ଗୋ ।

ପଲ୍ଲି ଏ ଆଜ ଦୁଃଖ ରାଗଣୀ ମୁଖରି—
ଶତେ ରହିଛୁ ଆଜ ମୋର ଗୀତ ପ୍ରଖରି
ଏ ତଳେ ରଚବ ଆଜ ମୋର
ଦୁଃଖ ଶୟନ
ନାହିଁ କରୁଥିଲା କଶୋଷି କୁସୁମ ଚୟନ !

କଳ ରାକ୍ଷସ ଶାସିତ ନଗର ବହ୍ୱାର
ଆଜ ବରଜ ମୁଁ ଆସିଛି, ଦିଅ ଗୋ ଆହାର
କ୍ଷୁଧିତ ତରୁଣ ! ପଲ୍ଲି ଗୋ
ଦିଅ ବସ୍ତର
ଜୀର୍ଣ୍ଣ ବିମୂର୍ତ୍ତ ବକ୍ଷ ଦୁଆର ବିସାର ।

ଫୁଟୁ ଫୁଲ ପୁଣି ବନେ ଏହି ଶିଳା ତଳପେ
ଦିବସ ଯାମିନୀ ଯହିଁ ଗଉରବ ବଳପେ
ପଙ୍କ ମଳିନ ବକ୍ଷ ଗୋ
ଆଜ ଉଜଳୁ
ଝରୁ ଗଦ୍‌ଗଦ୍ ଅଶ୍ରୁ ମୋ ଘନ କଜଳୁ ।

ଶୁଭୁ ହୁଳହୁଳି ଶୁଭୁ କଙ୍କଣ ରଗିଣୀ
ଶୁଭୁ ମୃଦଙ୍ଗ ଭାଗବତ ଯେବେ ଜାଗିନ
ହେ ପାଷାଣି ! ଆଜ ନବୁଅ ଗୋ
ପୁର ସରଣି
ଗଲେ ଯାହିଁ ସେହି ସୁକୁମାରୀ ବ୍ରତଚାରିଣୀ ।

କି ଜନମେ କେବେ ଆସିଥିଲି ତୋର ପରଶେ
ମନେ ପଡ଼େ ମୋର ଶତ ସହସ୍ର ବରଷେ
କେବେ ଗୋ ଆସିବ ଫେର ପୁଣି
ତୋର ଚରଣେ
ଭେଟି କି ପାରିବ ପାରିଲେ ମୁ ଦିନେ ମରଣେ ?

ଥରେ ବା ଲଭିବ ଏ ଫୁଲପରଶ କପାଳେ
ଥରେ ବା ଟାଣିବ ବନମାଳା ମୁଁ ଅକାଳେ
ମରଣେ ବା ଥରେ କରିବ ସେ
ଶୋଭା ...କନ
କହ ଉତ୍ତରଳ ବାସିନୀ ... ମୋ ବଚନ ?